କଥାକୁଞ୍ଜର ପ୍ରଥମ ଅର୍ଘ୍ୟ—

# ଗଳ୍ପ ଭାରତୀ

( ବିଭିନ୍ନ ଯୁଗର ସୁନିର୍ବାଚିତ ଗଳ୍ପର ମନୋଜ୍ଞ ସଂକଳନ )

ମୁଖ୍ୟ ସଂକଳକ

**ଶ୍ରୀ ଅସିତ୍ କର, ଏମ୍. ଏ.**

ସହଯୋଗୀ ବୃନ୍ଦ :—

ଶ୍ରୀ ନାରାୟଣଚନ୍ଦ୍ର ନାୟକ, ଏମ୍. ଏ.

କୁମାର ଶ୍ରୀ ତାରାପଦ ନନ୍ଦ,

ଶ୍ରୀ ରବୀନ୍ଦ୍ରନାଥ ନରେନ୍ଦ୍ର ସିଂହବର୍ମା, ଏମ୍. ଏ.

ପ୍ରକାଶ କରୁଛନ୍ତି

**ଶ୍ରୀ ରବୀନ୍ଦ୍ରନାଥ ମିଶ୍ର,**

**ପ୍ରୋପ୍ରାଇଟର—ଉତ୍କଳ-ବାଣୀ ବିହାର**

କଟକ-୨

ମୁଦ୍ରାକର:—
ଶ୍ରୀ ଲକ୍ଷ୍ମୀଧର [illegible]
ଦୁର୍ଗା ପ୍ରେସ
ଖଟବିନ୍ ସାହି
କଟକ-୧

ପ୍ରଥମ ମୁଦ୍ରଣ

୧୯୫୯

ମୂଲ୍ୟ ଟ. ୩ ୲

# ସୂଚୀ

# ଆମକୁ ଆଶୀର୍ବାଦ

ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ
ଏମ୍.ଏ.,ବି.ଏଲ୍.,ପି.ଏଚ୍.ଡି. (ଲଣ୍ଡନ)
ପୋଷ୍ଟ ଗ୍ରାଜୁଏଟ ପ୍ରଫେସର
ରେଭେନ୍ସା କଲେଜ, କଟକ-୩

ପ୍ରଫେସର ପଡ଼ା
ପୋ: ଚଉଳିଆଗଞ୍ଜ
କଟକ-୩
ତା ୫-୭-୫୮

କଲ୍ୟାଣୀୟ ଅସିତ୍,

......ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗର ଗାଳ୍ପିକମାନଙ୍କର ପୁନର୍ବାଚିତ ଗଳ୍ପ କତିପୟର ସଂକଳନ ଲାଗି ମୋର ଅଭିନନ୍ଦନ ଗ୍ରହଣ କରିବ । ଏପର୍ଯ୍ୟନ୍ତ ଏପରି ଯେଉଁ ସଂକଳନ ବାହାରିଛି, ତାହା ତୁଳନାରେ ତୁମ୍ଭମାନଙ୍କର ଏହି ପ୍ରଚେଷ୍ଟା ବିଶେଷ ଆଦର-ଲାଭ କରିବ ବୋଲି ମୁଁ ଭରସା କରେ......

ଶୁଭାକାଂକ୍ଷୀ
ଶ୍ରୀ କୁଞ୍ଜବିହାରୀ ତ୍ରିପାଠୀ

# ଅଭିମତ

ଓଡ଼ିଆ ଭାଷାରେ କ୍ଷୁଦ୍ରଗଳ୍ପର ପ୍ରକୃତ ଜନ୍ମଦାତା ଫକୀର ମୋହନ । ତାଙ୍କ ଲେଖା ପୂର୍ବରୁ ଯେ କେତୋଟି କ୍ଷୁଦ୍ରଗଳ୍ପ ଓଡ଼ିଆ ଭାଷାରେ ଦେଖିବାକୁ ମିଳେ ସେଥିରେ ମୌଳିକତା ଅତି କମ୍ ; ସେ ଗୁଡ଼ିକ ଇଂରାଜୀ ବା ବଙ୍ଗୀୟ କ୍ଷୁଦ୍ରଗଳ୍ପ ଛାୟାରେ ଲିଖିତ କହିଲେ ଅତ୍ୟୁକ୍ତି ହେବନାହିଁ । ପୁଣି ଓଡ଼ିଆ କ୍ଷୁଦ୍ର ଗଳ୍ପର ଆରମ୍ଭ ଓଡ଼ିଆ ପତ୍ର ପତ୍ରିକାର ଅଭ୍ୟୁଦୟ ସଙ୍ଗେ ଓତପ୍ରୋତ ଭାବରେ ଜଡ଼ିତ । 'ଇନ୍ଦ୍ରଧନୁ' ଓ 'ବିଜୁଳି' ସମୟରୁ 'ସହକାର' 'ନବଭାରତ' 'ଝଙ୍କାର' 'ନବଜୀବନ' ସମୟ ପର୍ଯ୍ୟନ୍ତ ଶହ ଶହ କ୍ଷୁଦ୍ର ଗଳ୍ପ ଓଡ଼ିଆରେ ଲେଖାଗଲଣି, ମାତ୍ର ଏ ସମସ୍ତ ଅଧ୍ୟୟନ କରି ସାରଗଳ୍ପ ସଙ୍କଳନ କରିବା ଚେଷ୍ଟା କମ୍ । ଶ୍ରଦ୍ଧେୟ ଅସିତ୍‌ବାବୁ "କଥାକୁଞ୍ଜ" ସାହିତ୍ୟ ସମିତିର ଆନୁକୂଲ୍ୟରେ ତାଙ୍କ ସହଯୋଗୀ ବନ୍ଧୁମାନଙ୍କ ସହିତ 'ଉତ୍କଳ ସାହିତ୍ୟ' 'ମୁକୁର' ଓ 'ଝଙ୍କାର' ପ୍ରଭୃତି ପତ୍ରିକାମାନଙ୍କରୁ ଶ୍ରେଷ୍ଠଗଳ୍ପ ସଂଗ୍ରହକରି ପୁସ୍ତିକା ଆକାରରେ ପ୍ରକାଶ କରିବା ଆନନ୍ଦର କଥା ।

କ୍ଷୁଦ୍ରଗଳ୍ପ ଉପନ୍ୟାସ ନୁହେଁ । ଏଥିରେ ଘଟଣା ଗୋଟିଏ ମାତ୍ର । ଅତି ଦୁଇ ଚାରି ଘଟଣା ଯୋଡ଼ି ଦେଲେ ଏହା ଉପନ୍ୟାସ ହେବନାହିଁ । ସେହିପରି ଉପନ୍ୟାସର ସାରାଂଶ କ୍ଷୁଦ୍ରଗଳ୍ପ ନୁହେଁ । କ୍ଷୁଦ୍ର ଗଳ୍ପରେ ବିଶେଷ କୌଶଳ ଲୋଡ଼ା । ଏହା ଗୋଟିଏ ବିଶିଷ୍ଟ

କଲା । ଗୋଟିଏ ଘଟଣା ଉପରେ ଭାବ ଆରୋପ କରି କ୍ଷୁଦ୍ର ଅବେଷ୍ଟନୀ ମଧ୍ୟରେ ମାନବ ଜୀବନର ତତ୍ତ୍ୱ ପ୍ରକାଶ କରିବା ଏହାର ଲକ୍ଷ୍ୟ ।

ଅସିତ୍‌ବାବୁ ପିଲାବୟସରୁ ସାହିତ୍ୟଲେଖା ଆରମ୍ଭ କରିଅଛନ୍ତି । ଓଡ଼ିଆ ପତ୍ର ପତ୍ରିକାମାନଙ୍କରେ ତାଙ୍କର ଲେଖା ବିରଳ ନୁହେଁ । 'ଗଳ୍ପ ଭାରତୀ'ର ସେ ହେଉଛନ୍ତି ମୁଖ୍ୟ ସଂକଳକ । 'ଗଳ୍ପ ଭାରତୀ' ପାଠ କରି ମୁଁ ଆନନ୍ଦିତ ହେଲି । ଏଥିରେ ଫକୀର-ମୋହନ, କାଳିନ୍ଦୀଚରଣ ଓ ଗୋଦାବରୀଶ ପ୍ରଭୃତି ସୁଲେଖକ-ମାନଙ୍କର ୧୨ଟି ଗଳ୍ପ ସନ୍ନିବେଶିତ ହୋଇଛି । ଏ ଗଳ୍ପଗୁଡ଼ିକ ଓଡ଼ିଶାରେ ସୁପରିଚିତ ଓ ଲୋକପ୍ରିୟ ।

ମୋର ଆଶା ପୁସ୍ତିକାଟି ସମାଜରେ ଆଦୃତ ହେବ ।

ନୂଆରାଜଧାନୀ, ଭୁବନେଶ୍ୱର
୧ । ୧୨ । ୫୮

**ଶ୍ରୀ ଗୋକୁଳଚନ୍ଦ୍ର ଶତପଥୀ**

# କୃତଜ୍ଞତା ଜ୍ଞାପନ

କଥାକୁଞ୍ଜର ପ୍ରଥମ ଅର୍ଘ୍ୟ, 'ଗଳ୍ପ ଭାରତୀ' ଆଜି ଆଲୋକକୁ ଆସୁଛି । ଯେଉଁ ଗାଳ୍ପିକମାନେ ଏବଂ ସ୍ୱର୍ଗତଃ ଗାଳ୍ପିକମାନଙ୍କର ସ୍ୱତ୍ୱାଧିକାରୀମାନେ, ଆମ୍ଭମାନଙ୍କର ମନୋନୀତ ଗଳ୍ପଗୁଡ଼ିକୁ ସଂକଳନରେ ସ୍ଥାନ ଦେବାପାଇଁ ଅନୁମତି ପ୍ରଦାନ କରିଛନ୍ତି ସେମାନଙ୍କ କଥା ଆଜି ସର୍ବାଗ୍ରେ ମନେ ପଡ଼ୁଛି, ସେମାନଙ୍କ ନିକଟରେ ଆମେ ଚିରକୃତଜ୍ଞ ।

ସଂକଳନ କାଳରେ ପ୍ରଜାତନ୍ତ୍ରର ସହକାରୀ ସମ୍ପାଦକ ଶ୍ରୀ ରମେଶଚନ୍ଦ୍ର ମହାନ୍ତି, 'ଗଣତନ୍ତ୍ର'ର ଏଡ୍‌ଭରଟାଇଜମେଣ୍ଟ ମ୍ୟାନେଜର ଶ୍ରୀ ଗୁମେଶ୍ୱର ନନ୍ଦ ଏବଂ ଶୁଭେଚ୍ଛୁ ବନ୍ଧୁ ସର୍ବଶ୍ରୀ ନରୋତ୍ତମ ସାହୁ, ହଳଧର ପଣ୍ଡା, ଖଳି ପାଢ଼ୀ ( ସାମ୍ବାଦିକ ) ବ୍ରଜନାଥ ରଥ; ଦେବେନ୍ଦ୍ରମହାନ୍ତି, ଏମ୍. ଏ. ପ୍ରମୁଖ ଆମକୁ ଯଥେଷ୍ଟ ଉତ୍ସାହିତ କରିଛନ୍ତି । ସେମାନେ ଆମର ଧନ୍ୟବାଦାର୍ହ ।

ଓଡ଼ିଶା ଶିକ୍ଷାବିଭାଗର ଡେପୁଟୀ ସେକ୍ରେଟାରୀ ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ଶତପଥୀ 'ଗଳ୍ପ ଭାରତୀ' ପାଠକରି ସ୍ୱୀୟ ଅଭିମତ ପ୍ରଦାନ କରିଅଛନ୍ତି । ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ସମାଲୋଚକ ରୂପେ ତାଙ୍କର ସ୍ଥାନ ଅତି ଉଚ୍ଚରେ । 'ନବଭାରତ' ଓ 'ସହକାର'ରେ ପ୍ରକାଶିତ ବହୁ ସାଲୋଚନାତ୍ମକ ପ୍ରବନ୍ଧରୁ ତାଙ୍କ ବଳିଷ୍ଠ ପ୍ରତିଭାର

ପରିଚୟ ମିଳେ । ସବୁବେଳେ କାର୍ଯ୍ୟବ୍ୟସ୍ତ ଥାଇସୁଦ୍ଧା ଆମ ଅନୁରୋଧ ଏଡ଼ି ନ ପାରି ସେ 'ଗଳ୍ପଭାରତୀ' ସମ୍ପର୍କରେ ଅଭିମତ ଦେଇଥିବାରୁ ଆମେ ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

ରେଭେନ୍ସା କଲେଜ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଏମ୍. ଏ. ବି. ଏଲ୍. ପି. ଏଚ୍. ଡ଼ି (ଲଣ୍ଡନ) ଆମର ଉଦ୍ୟମ ପ୍ରତି ଶୁଭେଚ୍ଛା ଜ୍ଞାପନ କରି ଆମକୁ ଆଶୀର୍ବାଦ ଜଣାଇ ଥିବାରୁ ଆମେ ତାଙ୍କ ନିକଟରେ ମଧ୍ୟ କୃତଜ୍ଞତା ଜ୍ଞାପନ କରୁଛୁ ।

'ଗଳ୍ପଭାରତୀ'ର ପ୍ରଚ୍ଛଦପଟ ଅଙ୍କନ କରିଛନ୍ତି ଉଦୀୟମାନ ତରୁଣ ଶିଳ୍ପୀ ଶ୍ରୀ ଅନନ୍ତ ପଣ୍ଡା, ଆମେ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତର ଆଶାୟୀ ।

ପରିଶେଷରେ ଉତ୍କଳ ବାଣୀ ବିହାରର ପ୍ରୋପ୍ରାଇଟର ଶ୍ରୀ ରବୀନ୍ଦ୍ରନାଥ ମିଶ୍ର ଏହି ପୁସ୍ତିକାଟିକୁ ଆଲୋକକୁ ଆଣିବା ଦିଗରେ ସାହାଯ୍ୟ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛୁ ।

ଶ୍ରୀ ଅସିତ୍ କବି ( ମୁଖ୍ୟ ସମ୍ପାଦକ )

ସହଯୋଗୀ ବୃନ୍ଦ

ଶ୍ରୀ ନାରାୟଣ ଚନ୍ଦ୍ର ନାୟକ

ଶ୍ରୀ ତାରାପଦ ନନ୍ଦ

ଶ୍ରୀ ରବୀନ୍ଦ୍ରନାଥ ନରେନ୍ଦ୍ର ସିଂହବର୍ମା

# କଥାକୁଞ୍ଜ ସମ୍ପର୍କରେ କେଇପଦ ...

୧୯୫୭ ମସିହା ଅଗଷ୍ଟ ମାସ ତା୧୫ ରିଖ......

ସେହି ଐତିହାସିକ ଦିବସରେ କେତେକ ସାହିତ୍ୟ ପ୍ରେମୀ ବନ୍ଧୁଙ୍କର ପ୍ରଯତ୍ନରେ "କଥାକୁଞ୍ଜ"ର ସୃଷ୍ଟି । ସୃଷ୍ଟିର ମାତ୍ର କେଇଟି ଦିନପରେ ଓଡ଼ିଶାର ଗାଳ୍ପିକମାନଙ୍କର ପ୍ରତିନିଧିସ୍ଥାନୀୟ ଗଳ୍ପଗୁଡ଼ିକର ଏକ ମନୋଜ୍ଞ ସଂକଳନ ପାଇଁ ଏହି ସମିତିର ଆନୁକୂଲ୍ୟରେ ପ୍ରୟାସ ହୁଏ । ସେତେବେଳକୁ ଏହି ସଂକଳନର ଦାୟିତ୍ୱ ଏକ ଅସ୍ଥାୟୀ କମିଟି ହାତରେ ଅର୍ପିତ ହୋଇଥିଲା । କିନ୍ତୁ କେବଳ କେତେଗୁଡ଼ିଏ ଗଳ୍ପ ଏକତ୍ରକରି ପ୍ରକାଶକଲେ ସେଥିରେ କୌଣସି ନୂତନତ୍ୱ ରହିବନାହିଁ ବୋଲି ଆମେ ପରେ ଅନୁଭବ କଲୁ । ତେଣୁ କଥାକୁଞ୍ଜର ପ୍ରଥମ ଅର୍ଘ୍ୟକୁ ବୈଶିଷ୍ଟ୍ୟ ମଣ୍ଡିତ କରିବାପାଇଁ ଆମର ଦୃଷ୍ଟିକୋଣ ପରିବର୍ତ୍ତିତ ହେଲା । ୧୮୯୮ ମସିହାରୁ ଏ ଯାବତ୍ ବିଭିନ୍ନ ଖ୍ୟାତନାମା ଗାଳ୍ପିକମାନଙ୍କର ଗଳ୍ପଗୁଡ଼ିକୁ ନେଇ ଏକ ଉଲ୍ଲେଖଯୋଗ୍ୟ ସଂକଳନ ପାଇଁ ଆମେ ସିଦ୍ଧାନ୍ତ ଗ୍ରହଣ କଲୁ । ସଙ୍କଳନର ଅଭିମୁଖ୍ୟ ସମ୍ପର୍କରେ ରେଭେନ୍ସା କଲେଜର ମାନନୀୟ ଅଧ୍ୟାପକ ଶ୍ରୀ ନଟବର ସାମନ୍ତରାୟ, ଏମ୍. ଏ. ଆମକୁ ବହୁ ମୂଲ୍ୟବାନ ଉପଦେଶ ଦେଇ ଆମର ଧନ୍ୟବାଦାର୍ହ ହୋଇଛନ୍ତି ।

ଏ ଭିତରେ କଥାକୁଞ୍ଜର କର୍ମକର୍ତ୍ତା ନିର୍ବାଚନ ବିଧିବଦ୍ଧ ଭାବରେ ଅନୁଷ୍ଠିତ ହୋଇଯାଇଛି । ନିମ୍ନଲିଖିତ ବନ୍ଧୁମାନେ କର୍ମକର୍ତ୍ତା ରୂପେ ନିର୍ବାଚିତ ହୋଇଛନ୍ତି ।

ଶ୍ରୀ ଅମିତ୍ କର—ସଭାପତି

ଶ୍ରୀ ରବୀନ୍ଦ୍ରନାଥ ନରେନ୍ଦ୍ରସିଂହ ବର୍ମା—ଉପସଭାପତି

ଶ୍ରୀ ନାରାୟଣଚନ୍ଦ୍ର ନାୟକ—ସମ୍ପାଦକ

ଶ୍ରୀ ତାରାପଦ ନନ୍ଦ—ଯୁଗ୍ମ ସମ୍ପାଦକ

ନିକଟରେ "କଥାକୁଞ୍ଜ"ର ଦ୍ୱିତୀୟ ଅବଦାନ ଯେପରି ଆଲୋକକୁ ଆସିପାରିବ ସେଥିପାଇଁ ଯଥାଯଥ ପ୍ରୟାସ ହେଉଛି । ଅଳ୍ପଦିନ ଭିତରେ ଏହି ଶିଶୁ ଅନୁଷ୍ଠାନ ଓଡ଼ିଶାର ସାହିତ୍ୟାନୁରାଗୀ ଓ ସାହିତ୍ୟିକମାନଙ୍କର ଯେଉଁ ଶୁଭେଚ୍ଛା ପାଇଛି ତାହାହିଁ ଭବିଷ୍ୟତ ପାଇଁ ଆମର ପାଥେୟ ।

| | | |
|---|---|---|
| କଟକ-୧ | } | ବିନୟାବନତ |
| ୧୫ ଅଗଷ୍ଟ ୧୯୫୮ | | ଶ୍ରୀ ନାରାୟଣଚନ୍ଦ୍ର ନାୟକ—ସମ୍ପାଦକ |
| | | ଶ୍ରୀ ତାରାପଦ ନନ୍ଦ—ଯୁଗ୍ମ ସମ୍ପାଦକ |

# ସଂକଳିତ ଗଳ୍ପଗୁଡ଼ିକ ସମ୍ପର୍କରେ ……

କ୍ଷୁଦ୍ରାୟତନ ଗଳ୍ପହିଁ କ୍ଷୁଦ୍ର ଗଳ୍ପ ବୋଲି କେତେକଙ୍କର ଧାରଣା । କିନ୍ତୁ ଏଭଳି ଧାରଣା ଯଥାର୍ଥରେ ଭ୍ରମାତ୍ମକ । ହେନେରୀ ଜେମ୍ସଙ୍କର "The Turn of the Screw" ମଧ୍ୟ କ୍ଷୁଦ୍ରଗଳ୍ପ —ଏହା ପଚାଶ ହଜାର ଶବ୍ଦ ବିଶିଷ୍ଟ । ତେଣୁ କେବଳ କଳେବରର କ୍ଷୁଦ୍ରତାକୁ କେନ୍ଦ୍ର କରି କ୍ଷୁଦ୍ରଗଳ୍ପର ସଂଜ୍ଞା ନିରୂପଣ କରାଯାଇ ପାରିବ ନାହିଁ । କ୍ଷୁଦ୍ରଗଳ୍ପ ସଂପର୍କରେ ଆଲୋକପାତ କରିବାକୁ ଯାଇ Brander Matthews ସ୍ୱୀୟ "The Philosophy of the short story"ରେ ଲେଖିଛନ୍ତି—

"A true short story is something other and something more than a mere story which is short. A true short story differs from the novel chiefly in its essential unity of impression. In a far more exact and precise use of the word, a short story has unity as a novel can-not have it. Often, it may be noted by, the short story fulfils the three unities of the French classic drama; it shows one action, in one place, on one day. A short story deals with a single character, a single event, a single emotion or the series of emotions called forth by a single situation."

ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ ଆଲୋଚନା କଲେ ସୁସ୍ପଷ୍ଟ ରୂପେ ପ୍ରତିଭାତ ହୁଏ ଯେ, ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପର ସୃଷ୍ଟି ବେଶୀ ଦିନର ନୁହେଁ । ବ୍ୟାସକବି ଫକୀରମୋହନହିଁ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ରୂପେ ଖ୍ୟାତିଲାଭ କରିଛନ୍ତି । ଅବଶ୍ୟ ଏକଥା ଅନସ୍ୱୀକାର୍ଯ୍ୟ ଯେ, ସୁଦୂର ଅତୀତରୁ ଆମ ଦେଶରେ କାହାଣୀ କଳାର ଅଭ୍ରାନ୍ତ ସ୍ପର୍ଶ ରହିଛି । ଔପାବ୍ରତ କଥା ଉତ୍କଳ କାହାଣୀର ଲୋକକଥା ତଥା ଚତୁର ବିନୋଦର କଥାସମୂହ ଆମକୁ ଏକଥା ସୂଚାଇ ଦିଏ ।

ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ପ୍ରକାଶ ଲାଭ କରିବା ପୂର୍ବରୁ ରାଧାନାଥଙ୍କ "ଇଟାଲୀୟ ଯୁବା" ମଧୁସୂଦନଙ୍କର "ଚନ୍ଦ୍ରତାରା" "ପ୍ରଣୟର ଅଦ୍ଭୁତ ପରିଣାମ" ଓ "ହେମମାଳା" ପ୍ରକାଶିତ ହୋଇଥିଲା । କିନ୍ତୁ ପ୍ରକୃତରେ କ୍ଷୁଦ୍ରଗଳ୍ପର ଉଦାରସଜ୍ଞା ଅନୁଯାୟୀ କ୍ଷୁଦ୍ରଗଳ୍ପର ଚତୁଃସୀମା ମଧ୍ୟରେ ସେ ଗୁଡ଼ିକର ପ୍ରବେଶ ଅସମ୍ଭବ । ଯଥାର୍ଥ କ୍ଷୁଦ୍ରଗଳ୍ପ ଆମକୁ ପ୍ରଥମେ ଦେଲେ ବ୍ୟାସକବି ଫକୀରମୋହନ ।

ଫକୀରମୋହନଙ୍କ 'ଆତ୍ମ ଜୀବନ ଚରିତ'ରେ ଉଲ୍ଲେଖ ଅଛି... "ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ହେଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦ ଜନକ କବିତା ଲେଖୁଥିଲି । ସେହି "ବୋଧଦାୟିନୀ" ପତ୍ରିକାରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି, ତାହାର ନାମ "ଲଛମନିଆ" । ବୋଧହୁଏ ଉତ୍କଳରେ ତାହାହିଁ ପ୍ରଥମ ମୁଦ୍ରିତ କ୍ଷୁଦ୍ରଗଳ୍ପ ।"

( ପୃ ୧୭୩—୭୪ )

ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ ଫକୀରମୋହନଙ୍କ ପ୍ରଥମ କ୍ଷୁଦ୍ରଗଳ୍ପ ସମ୍ପର୍କରେ ବର୍ତ୍ତମାନ ଏକ ସଂଶୟବାଦ ସୃଷ୍ଟି ହୋଇଛି । ଫକୀରମୋହନଙ୍କର ମହାପ୍ରୟାଣ ପରେ "ଉତ୍କଳ ସାହିତ୍ୟ"ରେ ତାଙ୍କର ଯେଉଁ ଆତ୍ମଜୀବନୀ ପ୍ରକାଶ ପାଇଥିଲା ସେଥିରେ ଏହି ଉଦ୍ଧୃତାଂଶ ନ ଥିବାରୁ ଏବଂ "ଲଛମନିଆ" ଗଳ୍ପଟି ଦେଖିବାକୁ ମିଳୁ ନ ଥିବାରୁ ଏହାର ଅସ୍ତିତ୍ୱ ସମ୍ପର୍କରେ କେତେକେ ସନ୍ଦିହାନ ହୋଇ ପଡ଼ିଛନ୍ତି । ଫକୀରମୋହନଙ୍କର ମହାପ୍ରୟାଣ ପରେ ତାଙ୍କର ସୃଷ୍ଟି ପୂତ-ସାହିତ୍ୟ-କାନନକୁ ନାନାଭାବରେ ବିକଳାଙ୍ଗ କରି ଯାଇଥିବା କଥା କାହାରିକୁ ଅବିଦିତ ନାହିଁ, ତେଣୁ, 'ଲଛମନିଆ' ଗଳ୍ପର ଅସ୍ତିତ୍ୱ ସମ୍ପର୍କରେ ସନ୍ଦିହାନ ହେବାରେ ଅସ୍ୱାଭାବିକତା ନାହିଁ । ମାତ୍ର ଏକଥା ଅନସ୍ୱୀକାର୍ଯ୍ୟ ଯେ ଏହି ଗଳ୍ପର ଅସ୍ତିତ୍ୱକୁ ଅସ୍ୱୀକାର କରିବା ପୂର୍ବରୁ ଗଭୀର ଗବେଷଣା ଲୋଡ଼ା । ଯେଉଁ "ବୋଧଦାୟିନୀ" ପତ୍ରିକାରେ ଏହା ପ୍ରକାଶିତ ହୋଇଥିଲା ବୋଲି ଫକୀରମୋହନଙ୍କ ଆତ୍ମ-ଜୀବନୀ ଚରିତରେ ଉଲ୍ଲେଖ ଅଛି । ସେହି ବୋଧଦାୟିନୀ ପତ୍ରିକାର ବିଭିନ୍ନ ସଂଖ୍ୟାର ଅନୁଧାନ କାମ୍ୟ । ଦୁଃଖର ବିଷୟ ଏ ସଂକଳନ ସମୟରେ ବହୁସ୍ଥାନରେ ଉକ୍ତ ପତ୍ରିକାର ଅନୁସନ୍ଧାନ କରି ଆମକୁ ନିରାଶ ହେବାକୁ ପଡ଼ିଛି । ତେଣୁ ଏହି ସଂକଳନରେ ଫକୀରମୋହନଙ୍କ "ରେବତୀ" ଗଳ୍ପଟି ସନ୍ନିବେଶିତ ହୋଇଛି । ଏହା ୧୮୯୮ ମସିହା ଅକ୍ଟୋବର ମାସରେ "ଉତ୍କଳ ସାହିତ୍ୟ"ରେ ପ୍ରକାଶିତ ହୋଇଥିଲା ।

## ରେବତୀ

'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ "ରେବତୀ" ଗଳ୍ପର ଆଦ୍ୟରେ ***Rev. J. H. Gurney***ଙ୍କ ଲିଖିତ କବିତାର ଉଦ୍ଧାର ଦେଖିବାକୁ ମିଳେ । ତାହାହେଉଛି—

"But oft some shinning April morn
Is darkened in an hour
And blackest grief's over joyous home,
Alas ! unseen may lower."

"ଗଳ୍ପସଳ୍ପ" ତଥା "ଫକୀରମୋହନ ଗ୍ରନ୍ଥାବଳୀ"ରେ ଯେଉଁ "ରେବତୀ" ସନ୍ନିବେଶିତ ହୋଇଛି ତାହାର ଆଦ୍ୟରେ ଏହା ଦେଖିବାକୁ ମିଳେନା । ଉଦ୍ଧୃତାଂଶକୁ ଉଭୟ 'ଗଳ୍ପସଳ୍ପ' ଓ ଫକୀରମୋହନ 'ଗ୍ରନ୍ଥାବଳୀ'ରେ ଉପେକ୍ଷିତ—ଅଥଚ 'ରେବତୀ' ଗଳ୍ପର ଅନ୍ତସ୍ପର୍ଶୀ ପାଠକ ପାଠିକାମାନେ ସେଥିରୁ ପାଇ ପାରୁଛନ୍ତି । ପ୍ରାଚୀନ ଇଂରେଜୀ ନାଟକରେ Prologue ଯେପରି ନାଟକର ବିଷୟବସ୍ତୁ ସମ୍ପର୍କରେ ଆଲୋକପାତ କରିବାକୁ ସମର୍ଥ ହୋଇପାରୁଛି, ଉକ୍ତ ଇଂରେଜୀ ଉଦ୍ଧୃତାଂଶଟି ଅନୁରୂପ ଭାବରେ 'ରେବତୀ' ଗଳ୍ପର ମର୍ମବାଣୀ ସମ୍ପର୍କରେ ଆଲୋକପାତ କରିବାକୁ ସମର୍ଥ ହୋଇପାରୁଛି ।

ଫକୀରମୋହନଙ୍କ ଅମଳିନ ସୃଷ୍ଟି "ରେବତୀ"ର ନାୟିକା ହେଉଛି କଟକଜିଲ୍ଲାର ହରିହରପୁର ପ୍ରଗନାସ୍ଥ ପାଟପୁର ଗ୍ରାମର ଶ୍ୟାମବନ୍ଧୁ ମହାନ୍ତିଙ୍କ ଅଲିଅଳ କନ୍ୟା ରେବତୀ । ଗୋଲାପର ସ୍ୱପ୍ନଦୋଳି ମଳୟ ପବନରେ ସରାଗରେ ସେ ଆଖି ମେଲିଛି । ବାପ ମାଆର ଅଗାଧ ସ୍ନେହରେ ନିତ୍ୟ ଅବଗାହନ କରି ଚଞ୍ଚଳା ପ୍ରଜାପତି ପରି ଘୂରିବୁଲୁଛି ସେ । କିନ୍ତୁ ସହସା ତାର ଜୀବନାକାଶରେ ଉହ୍ଲାଇ ଆସିଛି ଦୁର୍ଭାଗ୍ୟର କଜଳକଳା ଅନ୍ଧକାର । ଅଗ୍ନିନଟକ ପାଟପୁରରେ ବାଡ଼ି ପଡ଼ିଲା···ଆଉ ତାର ଶିକାର ହେଲେ ରେବତୀର ପିତାମାତା । ନିୟତିର କ୍ରୁର ପରିହାସରେ ରେବତୀ ଭାଙ୍ଗିପଡ଼ିଲା । ପାଠପଢ଼ିବା ପାଇଁ ରେବତୀର ସ୍ପୃହାହିଁ ଏ ସବୁର ମୂଳକାରଣ ବୋଲି ଅନ୍ଧବିଶ୍ୱାସଗ୍ରସ୍ତା ଶ୍ୟାମବନ୍ଧୁଙ୍କ ଜନନୀ ମତ ଦେଉଛି ।

ଆଖିରେ ଅଖିଏ ଲୁହ, କରୁଣ ଚୁହାଣୀରେ କେତେ ଅବ୍ୟକ୍ତ କଥା, ବୁକୁରେ ଘଡ଼ଫଡ଼ା ଦୀର୍ଘଶ୍ୱାସ ଘେନି ରେବତୀ ବାସୁଦେବଙ୍କୁ ଚୁହିଁ ରହିଛି । ବାସୁଦେବ ହେଉଛି ତାହାର ସ୍ୱର୍ଗତଃ ପିତାମାତାର ମନୋନୀତ ସ୍ୱାମୀ ··· ନିଜକୁ ମନେମନେ ବହୁଦିନରୁ ରେବତୀ ବାସୁର ଚରଣତଳେ ଅର୍ଘ୍ୟ ଦେଇଛି । କିନ୍ତୁ ନିରାଶାର ଘନ ଅନ୍ଧକାର ଭିତରେ ଯେଉଁ କ୍ଷୀଣ ଦୀପଟିଏ ଖାଲି ରେବତୀର ଏକମାତ୍ର ସମ୍ବଳ ଥିଲା, କାଳର ନିଷ୍ଠୁରତାରେ ସେ ବି ହଠାତ୍ ନିର୍ବାପିତ ହୋଇଥିଲା । ବିଧାତାର ତୀବ୍ର ପୀଡ଼ନ ରେବତୀ ଆଉ ସହିପାରିଲାନି । ସନ୍ନିପାତ ରୋଗଗ୍ରସ୍ତା ହେଲା ସେ । ଏକ ନିଥର ରଜନୀର ଅବୁଝା ମାୟା ଭିତରେ ତାର ବିକ୍ଷୁବ୍ଧ ଶରୀର-ପିଞ୍ଜରାରୁ ପ୍ରାଣପକ୍ଷୀ ପକ୍ଷ ମେଲାଇ ଉଡ଼ିଗଲା ଚିରଦିନ ପାଇଁ । ସେହି ରାତିପହରକ ସମୟରେ ଶ୍ୟାମବନ୍ଧୁ ମହାନ୍ତିଙ୍କ ପଡ଼ୋଶୀମାନେ ଶୁଣିଥିଲେ ଶ୍ୟାମବନ୍ଧୁଙ୍କ ଜନନୀଙ୍କର ରେବତୀ ବିରୁଦ୍ଧରେ ଶେଷ ବିଷୋଦ୍‌ଗାର······"ଲୋ ରେବତୀ ! ଲୋ ରେବୀ, ଲୋ ନିଆଁ, ଲୋ ଚୁଲି······"

'ରେବତୀ' ଗଳ୍ପର ପ୍ରାରମ୍ଭ ପରି ସମାପ୍ତି ମଧ୍ୟ ଅତି ନାଟକୀୟ ଓ ହୃଦୟସ୍ପର୍ଶୀ । "ରେବତୀ"ର କରୁଣ ଜୀବନର ଅଶ୍ରୁଳ ପରିସମାପ୍ତି ଆମ ଆଖି କୋଣରୁ ଯେଉଁ ଦୁଇବିନ୍ଦୁ ଲୁହ ଝରାଇ ଥାଏ ସେଥିରେହିଁ ଗାଳ୍ପିକ ଫକୀରମୋହନଙ୍କ ସୃଷ୍ଟିର ସାଫଲ୍ୟ ପ୍ରକଟିତ ହୋଇଥାଏ । କଥନ ଭଙ୍ଗୀରେ ସାରଲ୍ୟ ଓ କରୁଣ ରସର ପରିବେଷଣରେ ଅଭୂତପୂର୍ବ ସଫଳତା ଭିତରେ 'ରେବତୀ' ଓଡ଼ିଆ ସାହିତ୍ୟରେ ଯଥାର୍ଥରେ ଏକ ବିସ୍ମୟ ।

# ଅରୁଣା

ଦୟାନିଧି ମିଶ୍ରଙ୍କର 'ଅରୁଣା' ଏକ ଐତିହାସିକ ଗଳ୍ପ । ଏହା ୧୯୧୪ ମସିହା ଅଗଷ୍ଟ ମାସରେ 'ମୁକୁର'ରେ ପ୍ରକାଶିତ ହୋଇଥିଲା । ଦୟାନିଧି ମିଶ୍ର ଓଡ଼ିଆ ସାହିତ୍ୟରେ ଜଣେ ସୁପରିଚିତ ଗାଳ୍ପିକ । ଇତିହାସର ବିଷୟ ବସ୍ତୁକୁ କେନ୍ଦ୍ର କରି ଗଳ୍ପର ମଧୁର ପରିବେଷ୍ଟନୀ ମଧ୍ୟରେ କିପରି ସୁଖପାଠ୍ୟ କରାଯାଇପାରେ "ଅରୁଣା" ତା'ର ଏକ ବଳିଷ୍ଠ ଦୃଷ୍ଟାନ୍ତ ।

ସମ୍ବଲପୁରର ଐତିହ୍ୟ ଅତି ଗୌରବୋଜ୍ଜ୍ୱଳ । ମରହଟ୍ଟାମାନଙ୍କର ପ୍ରବଳ ଆକ୍ରମଣର ଯଥାର୍ଥ ଉତ୍ତର ଦେଇ ସୁଦୂର ଅତୀତର ସ୍ମରଣୀୟ ମୁହୂର୍ତ୍ତିଗୁଡ଼ିକରେ ସମ୍ବଲପୁର ଓଡ଼ିଆ ଜାତିର ଟେକ ରଖିପାରିଥିଲା । ଅଭୁଲା ଅତୀତ ଇତିହାସର ସେହି ଗୌରବଦୀପ୍ତ ଅଧ୍ୟାୟକୁ ଚିରସ୍ମରଣୀୟ କରିବାପାଇଁ 'ଅରୁଣା' ଗଳ୍ପ ମାଧ୍ୟମରେ ଯେଉଁ ପ୍ରୟାସ ହୋଇଛି ତାହା ବାସ୍ତବିକ ସଫଳ ହୋଇଛି ।

ଗଳ୍ପର ନାୟିକା ଅରୁଣା—ମରହଟ୍ଟା ଜାତିର ଗୌରବ ଲକ୍ଷ୍ମୀ ସେ । ସମ୍ବଲପୁର ଦୁର୍ଗର ଉତ୍ତର ପଶ୍ଚିମ ସୀମାନ୍ତବର୍ତ୍ତୀ ଅଞ୍ଚଳରେ ମରହଟ୍ଟା ଶକ୍ତିକୁ ପ୍ରତ୍ୟୁତ୍ତର ଦେଇ ପୃଥ୍ୱୀସିଂହ ଜୟମାଲ୍ୟ ରୂପେ ପାଇଛନ୍ତି ଅରୁଣାକୁ । ଇତିହାସକୁ ପାଖେ ପାଖେ ରଖି ଲେଖକ ଗଳ୍ପର ଧ୍ୟେୟବସ୍ତୁକୁ ଗତିଶୀଳ କରିବାକୁ ଚେଷ୍ଟା କରିଛନ୍ତି । ଅତୀତର ସ୍ୱର୍ଣ୍ଣୋଜ୍ଜ୍ୱଳ ଦିନଗୁଡ଼ିକର ମଧୁର ଚିତ୍ର ଦେବାବେଳେ ବର୍ତ୍ତମାନର କରୁଣ ଦୃଶ୍ୟ ଲେଖକଙ୍କୁ ବ୍ୟଥିତ କରିଛି···ତାଙ୍କ ଚିତ୍ତଦ୍ରୟ ଶୋକକାତର ହୋଇ ଉଠିଛି —

"ସମ୍ବଲପୁରର ହୀରକ ବାଣିଜ୍ୟ ଭାରତବର୍ଷର ତଦାନୀନ୍ତନ ଗଭର୍ଣ୍ଣର ଲର୍ଡ କ୍ଲାଇବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସମ୍ବଲପୁର

ହୀରାପାଇଁ ଚିରକାଳ ପ୍ରସିଦ୍ଧ । Ptolemy, Pliny ପ୍ରଭୃତି ବୈଦେଶିକ ଲେଖକମାନେ ଏହି ହୀରା ବିଷୟରେ ଅନେକ କଥା ଲେଖିଅଛନ୍ତି—"As well as we can compare ancient with modern geography, Rome was supplied with diamond from the mine of Sambalpur. ... ସେ'ତ ପୁରାତନ ଯୁଗର କଥା । ଅମ୍ଭେମାନେ ଯେଉଁ ସମୟର କଥା କହୁଅଛୁ, ସେହି ସମୟରେ ମଧ୍ୟ ସମ୍ବଲପୁରର ହୀରକ ବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା । ହାୟ ! ଆଜି ସେ ହୀରାକୁଦ ଅଛି, ସେହି ସମ୍ବଲପୁର ଅଛି; ସେହି ମହାନଦୀ କଳ-କଳ ରବରେ ସମ୍ବଲପୁରବାସୀଙ୍କୁ ମୁଗ୍ଧ କରି ମାତୃସ୍ତନ ଧାରା ପରି ସମ୍ବଲପୁରର ବକ୍ଷରେ ପ୍ରବାହିତ ହେଉଛି । କିନ୍ତୁ ସେ ହୀରକ କାହିଁ ! ସେ ବୀର ପୁରୁଷମାନେ କାହାନ୍ତି ! ହାୟ ସେ ଦିନ ଆଉ ଏ ଦିନ !" ( ଗଳ୍ପ ଭାରତୀ, ୨୩ ପୃଷ୍ଠା )

ଗଳ୍ପଟିର ପରିକଳ୍ପନା ମୂଳରେ ଯେଉଁ ଗଭୀର ଜାତୀୟତା-ବୋଧ ରହିଛି ବିଷୟବସ୍ତୁର ପରିବେଷଣରେ ତାହା ଅଧିକ ପ୍ରକଟିତ ହୋଇଛି ।

## ଡାହାଣୀ ଆଳୁଅ

୧୯୨୬ ମସିହା ଜାନୁଆରୀ ମାସରେ 'ବାରୁଣୀ'ରେ ଡାହାଣୀ ଆଲୁଅ ପ୍ରକାଶିତ ହୋଇଥିଲା । "ମଲ୍ଲିକାହାର"ର ବିଖ୍ୟାତ କଥାଶିଳ୍ପୀ ଉପେନ୍ଦ୍ରବାବୁଙ୍କ କଳାସୃଷ୍ଟି ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଏହି "ଡାହାଣୀ ଆଲୁଅ" । ଏହି ଗଳ୍ପଟିରେ ସବୁଠାରୁ ବେଶୀ ପ୍ରଣିଧାନ ଯୋଗ୍ୟ ହେଉଛି ସୁସଂଯତ ଶବ୍ଦଙ୍କ ଯୋଜନାର ମାଧୁର୍ଯ୍ୟ ଭିତରେ ପ୍ରକାଶ ଭଙ୍ଗୀର ନୂତନତ୍ୱ—

“ଘୋର ଅନ୍ଧାର-ହଜା ନିଶବଦ ବର୍ଷାଭୂଇଁ ଘରତରେ, ଭଙ୍ଗା ମାଟି ଘରଟିଏ; ବର୍ଷା-କାକର ଦାଉରେ ଛଣ ଛପରଟିକ ତାର କେଉଁକାଳୁ କୁଆଡ଼େ ଉଡ଼ିଗଲାଣି । କଣ୍ଟାବଣ ଭିତରେ, ଖାଲି ଗୋଟାଏ ଉଞ୍ଚ ଡ଼ିହ, ଆଉ ଦଦରା କାନ୍ଥ କେତୋଟ । ବତାସ ଧାକ୍‌ରେ ସେତକ ବି’ ଏଇଲାଟେ ପଡ଼ିଯିବ ସତେକି ?

ଘଡ଼ିକ ପରେ ବର୍ଷା ଅସ୍ଥିଅସିଲା । ଅଙ୍ଗାର ବୋଳାରଙ୍ଗ ଦେହରେ ବିଜୁଳି ଝଟକ୍‌ମାକ୍ ମାରି ବତାସ ଝପଟିଗଲା ଗଜାଧାନ-ଗଛ ମେଳରେ ଚହଲ ପକାଇ ଦେଇ ।” ( ଗଳ୍ପଭାରତୀ-ପୃ ୪୦ ପୃଷ୍ଠା )

ବିଷୟ ବସ୍ତୁର ଅବତାରଣା ପାଇଁ ଗଳ୍ପର ପ୍ରାରମ୍ଭରେ ଆବଶ୍ୟକୀୟ ବାତାବରଣ ସୃଷ୍ଟି କରିବା ପାଇଁ ଉଲ୍ଲିଖିତ ବର୍ଣ୍ଣନା ଭିତରେ ଲେଖକଙ୍କ ପ୍ରୟାସ ସଫଳ ହୋଇଛି । ବିଷୟ ବସ୍ତୁର ପରିବେଷଣ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବାରେ ସମସ୍ତେ ସମର୍ଥ ହୋଇପାରନ୍ତି ନାହିଁ । ଏଥି ସକାଶେ ପ୍ରତିଭାର ଯାଦୁକାରୀ ଶକ୍ତି ଅପରିହାର୍ଯ୍ୟ । ଉପେନ୍ଦ୍ରବାବୁ ଯଥାର୍ଥରେ ସେ ଶକ୍ତିର ଅଧିକାରୀ ହୋଇ ପାରିଛନ୍ତି ।

‘ତାହାଣୀ ଆଲୁଅ’ ର ବିଷୟବସ୍ତୁ ଆମର ସାମାଜିକ ଜୀବନରୁ ଆହୃତ । ଗଳ୍ପର ନାୟିକା ରତୀ ଓ ତାହାର ସ୍ୱାମୀ ଆମର ସମାଜର ଦୁଇଟି ସରଳ, ତରଳ, ବିମଳ ପ୍ରାଣ । ସେମାନଙ୍କ ଜୀବନ ରଙ୍ଗ-ମଞ୍ଚରେ ବୃନ୍ଦାବନର ଉପସ୍ଥିତ ଏକ ଦୁର୍ଘଟଣା । ରତୀ ଓ ତାହାର ସ୍ୱାମୀ ସେହି ଦୁର୍ଘଟଣାର ଶିକାର ହୋଇ ଅଛନ୍ତି । ସଯତ୍ନରେ ନିର୍ମିତ ସେମାନଙ୍କର ସ୍ୱପ୍ନିଲ ନୀଡ଼ ଭାଙ୍ଗି ପଡ଼ିଛି…… ରତୀ ଚିରଦିନ ଲାଗି ଆଖି ବୁଜିଛି, ଆଉ ତାର ସ୍ୱାମୀ ପାଗଳ ହୋଇ

କୁଅଡ଼େ ଚାଲିଯାଉଛି । ରକ୍ତର ମାଟିର ଶରୀର ଜଳପୋଡ଼ି ପାଉଁଶ ହୋଇଗଲା । ଖାଲି ରହିଗଲା ଗୋଟିଏ ଆଲୁଅ ଠିକ୍ ତାହାର ଦେହପରି, ଖୁବ୍ ବଡ଼, ଖୁବ୍ ତେଜ ।

ଗଳ୍ପର ପ୍ରାରମ୍ଭରୁ ସମାପ୍ତି ପର୍ଯ୍ୟନ୍ତ ପାଠକ ପାଠିକାଙ୍କ ମନରେ ଗଭୀର ରେଖାପାତ କରିବାପାଇଁ 'ଡାହାଣୀ ଆଲୁଅ'ରେ ଅସରନ୍ତି ଉପାଦାନ ରହିଛି । ତେଣୁ ଗଳ୍ପଟି ପଢ଼ିବାକୁ ଆରମ୍ଭ କଲାମାତ୍ରେ ଶେଷ ନ କରି ରହି ହୁଏନାହିଁ ।

## ବାଟ୍‌ଘର ଓ ରେଳଗାଡ଼ି

'ବାଟ୍‌ଘର ଓ ରେଳଗାଡ଼ି' କାଳିନ୍ଦୀ ବାବୁଙ୍କ ଅମଳିନ ସୃଷ୍ଟି, ଏହା ୧୯୩୦ ମସିହା ( ମଇ—ଜୁନ୍ ) 'ଯୁଗବୀଣା'ରେ ପ୍ରକାଶିତ ହୋଇଥିଲା । ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, କବି ଓ ସମାଲୋଚକ ରୂପେ କାଳିନ୍ଦୀବାବୁ ଓଡ଼ିଆ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିପାରିଛନ୍ତି । 'ବାଟ୍‌ଘର ଓ ରେଳଗାଡ଼ି' ତାଙ୍କ ଶୈଳ୍ପିକ ପ୍ରତିଭାର ବିକଚ ଅଭିବ୍ୟକ୍ତି ।

'ବାଟ୍‌ଘର ଓ ରେଳଗାଡ଼ି' ଏକ କରୁଣରସାତ୍ମକ ଗଳ୍ପ । ଏହାର ନାୟକ ଦାମ, ବି. ଏନ୍. ଆର୍. ପ୍ୟାସେଞ୍ଜର ଗାଡ଼ି ଭଳି ସତେ ଯେପରି ସେ ଏକ ମେସିନ୍ । ଗାଡ଼ି ପ୍ରତି ଷ୍ଟେସନରେ ଛାଡ଼ିବାମାତ୍ରେ ଅଭ୍ୟସ୍ତ ମୁହଁରୁ ତାର ଆପେ ଆପେ ବାହାରିପଡ଼େ — "ସୋଡ଼ା, କେଲା, ପିଆଜି ।" ଚଳନ୍ତି ଜୀବନ ତାର······ ସରସତାର ଅଭାବରେ ସେ ଯନ୍ତ୍ରବତ୍ ହୋଇପଡ଼ିଛି । ରେଳଗାଡ଼ିରେ ଏହିପରି ଯାଉ ଯାଉ ଦିନେ ହଠାତ୍ ଗୋଟିଏ ବାଟ୍‌ଘର ପାଖରେ ଦେଖିଲା ସେ ଜଣକୁ । ଯାଜାବର ଦାମର ଅଯତ୍ନ-ରକ୍ଷିତ ହୃଦ-ବୀଣାର ତାର ସଙ୍ଗେ ସଙ୍ଗେ ବାଜି ଉଠିଲା । ବିହ୍ୱଳ ମାଦକତାରେ

ଅସ୍ଥିର ହୋଇ ଉଠିଲା ସେ । ପ୍ରଥମ ଗୃହାଣୀ ଭିତରେ ସେହି ଅପରିଚିତା କହ୍ନକୁ ଆପଣାର କରି ରଖିବା ପାଇ ତରୁଣ ପ୍ରାଣ ତାର ଚଞ୍ଚଳ ହୋଇ ଉଠିଲା । ଚଳନ୍ତା ଗାଡ଼ିରୁ ତେଣୁ ବାଠ୍‌ଘର ନିକଟରେ ମୁଞ୍ଜାଏ ମୁଞ୍ଜାଏ ଫଳ ପକାଏ ।

ନିତିମା ପାଇବା ଦିନ କହ୍ନପାଇଁ ସେ କେତେଟା ଭଲ ଭଲ ଜିନିଷ ନ କିଣି ରହିପାରିଲା ନାହିଁ । ଦାମର ଚିର ପରିଚିତ ବାଠ୍‌ଘର ନିକଟକୁ ଗାଡ଼ି ପହଞ୍ଚୁଥିବା ବେଳକୁ ସୂର୍ଯ୍ୟ ଅସ୍ତହୋଇ ଯାଉଥିଲା । ବାଠ୍‌ଘର ନିକଟରେ କହ୍ନ ଛିଡ଼ା ହୋଇଥିଲା । ଚଳନ୍ତା ଗାଡ଼ିରୁ ତା ଆଡ଼କୁ ଲୋଲୁପ ଗୃହାଣୀରେ ଚାହିଁ ରହିଥିଲା ଦାମ । ରେଲଗାଡ଼ି ବାଠ୍‌ଘର ଡେଇଁ ଆଗେଇ ଗଲା । ହୁଙ୍କିପଡ଼ି କହ୍ନ ଆଡ଼କୁ ଚାହିଁବା ମାତ୍ରେ ଦାମ ଖସି ପଡ଼ିଲା ରେଲଗାଡ଼ିରୁ । ଦାମ ଝରିପଡ଼ିଲା ଚିରଦିନ ପାଇଁ । ରେଲ ଲାଇନ୍‌ର ଥାଙ୍ଗର ଉପରେ ମୁନ୍ଦା ମୁନ୍ଦା ହୋଇ ପଡ଼ିରହିଲା ଦାମର ତାଜାରକ୍ତ । ଅବୁଝା ଅବାକ୍ ହୋଇ ଚାହିଁ ରହିଲା କହ୍ନ ସେହିଆଡ଼କୁ । ଦାମର ଲହୁର ଭାଷା, ଅତୃପ୍ତ ଆତ୍ମାର ବାଣୀ ବୁଝିବାକୁ ବ୍ୟର୍ଥ ପ୍ରୟାସ କରିବା ପୂର୍ବରୁ ବାପର ଡାକରେ ଚମକି ପଡ଼ି ଫେରିଗଲା ସେ—ସେଇ ବାଠ୍‌ଘରକୁ । ପ୍ୟାସେଞ୍ଜର ଗାଡ଼ି ଚାଲିଗଲା । ବାଠ୍‌ଘର ଠିକ୍ ସେହିଠି ସେହିପରି ଭାବରେ ଛିଡ଼ାହୋଇ ରହିଲା‥ ‥ବାଠ୍‌ଘରର ଅଦୂରରେ ପଡ଼ିରହିଲା ଗୋଟିଏ ତରୁଣ ହୃଦୟର ତାଜାରକ୍ତ……

ଏହାହିଁ ଗଳ୍ପଟିର ବିଷୟବସ୍ତୁ । ଦାମର ଚରିତ୍ର ଚିତ୍ରଣ ମାଧ୍ୟମରେ ଲେଖକ ଯେଉଁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣର ପରିଚୟ ଦେଇଛନ୍ତି ତାହା ବାସ୍ତବିକ ଉଲ୍ଲେଖଯୋଗ୍ୟ ।

## ତ୍ରିବେଣୀ ସଙ୍ଗମେ

'ତ୍ରିବେଣୀ ସଙ୍ଗମେ'ର ଲେଖକ ଶ୍ରୀ କାଳୀପ୍ରସନ୍ନ କବି ପ୍ରଥମେ ବଙ୍ଗଳାରେହିଁ ଲେଖାଲେଖି ଆରମ୍ଭ କରନ୍ତି । 'କାଳିଦାସ୍ତ' 'ରାଣୀର ରେଣୁଦା', 'ଭୋଟ ବିଭ୍ରାଟ', 'ହତଭାଗା'ର ଲେଖକ ହିସାବରେ ବଙ୍ଗଳା ସାହିତ୍ୟରେ ଯଥେଷ୍ଟ ଖ୍ୟାତିଲାଭ କରିବା ପରେ ହଠାତ୍ ଦିନେ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ କାଳୀପ୍ରସନ୍ନ ବାବୁଙ୍କର ସାକ୍ଷାତ୍ ହୁଏ । ଉତ୍କଳମଣି ଲେଖକଙ୍କୁ ଓଡ଼ିଆରେ ଲେଖିବା ପାଇଁ ପ୍ରବର୍ତ୍ତାଇ ଥିଲେ । ସେହି ଦିନଠାରୁ ଓଡ଼ିଆ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଲେଖନୀ ଚାଳନା କରି ସେ ବହୁ ନାଟକ, ଉପନ୍ୟାସ, ଗଳ୍ପ ଓ କବିତା ଲେଖିଛନ୍ତି । ତାଙ୍କ ଅଧିକାଂଶ ଗଳ୍ପ 'ସହକାର'ରେ ପ୍ରକାଶିତ ହୋଇଛି ।

ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ସୁଦ୍ଧା ସମାଜର କୁସଂସ୍କାର ବିରୁଦ୍ଧରେ କାଳିବାବୁ ଚିରଦିନ ବିପ୍ଲବ କରି ଆସିଛନ୍ତି । 'ତ୍ରିବେଣୀ ସଙ୍ଗମେ' ଗଳ୍ପରେ ତାହାହିଁ ଉଲ୍ଲେଖଯୋଗ୍ୟ । ଏହାର ନାୟକ ବିବାହ କରିଛି ଜଣେ ବାଲ୍ୟବିଧବାକୁ । ସମାଜର ପ୍ରଚଳିତ କୁସଂସ୍କାରଗ୍ରସ୍ତ ପଦ୍ଧତି ବିରୁଦ୍ଧରେ ନାୟକର ବିଦ୍ରୋହର ପ୍ରତିକ୍ରିୟା ଗଳ୍ପଟିରେ ଅତି ମର୍ମସ୍ପର୍ଶୀ ଭାବରେ ଫୁଟି ଉଠିଛି । କଥନ ଭଙ୍ଗୀରେ ଲେଖକଙ୍କର ବୈଶିଷ୍ଟ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ ।

## ଶିକାର

ଓଡ଼ିଆ ସାହିତ୍ୟରେ 'ଶିକାର' ଏକ ଅଭିନବ ସୃଷ୍ଟି । ଏହା ୧୯୩୬ ମସିହା ମଇ ମାସରେ 'ଆଧୁନିକ'ରେ ପ୍ରକାଶିତ ହୋଇଥିଲା । ଏହାର ଲେଖକ ସ୍ୱର୍ଗତଃ ଭଗବତୀ ପାଣିଗ୍ରାହୀ ଜଣେ ବିଶିଷ୍ଟ

କମ୍ୟୁନିଷ୍ଟ ନେତା ଥିଲେ । ସୂଚନାର ଆବରଣ ତଳେ ପ୍ରକାଶର ଗଭୀରତା ତାଙ୍କ ସାହିତ୍ୟ ସୃଷ୍ଟିର ପ୍ରଧାନ ବିଶେଷତ୍ୱ ।

'ଶିକାର'ର ପ୍ରଧାନ ଚରିତ୍ର ହେଉଛି ଘିନୁଆ । ଶିକାରୀ ହିସାବରେ ନାମ ଖ୍ୟାତିଲାଭ କରିଛି । ମହାବଳ ଶିକାର କରି ଡେପୁଟି କମିଶନରଙ୍କ ଠାରୁ ପୁରସ୍କାର ପାଇଛି ସେ । ଦିନକର କଥା—ଭୋରରୁ ଏକ ଅଦ୍ଭୁତ ଶିକାର ନେଇ ଡେପୁଟି କମିଶନରଙ୍କୁ ଭେଟିଲା ଘିନୁଆ । ଘିନୁଆର ଗାମୁଛାରେ ସଜକଟା ମଣିଷ ମୁଣ୍ଡ ଦେଖି ଚମକି ଉଠିଲେ ସାହେବ । ନୂଆ ପ୍ରଣାଳୀରେ ବକ୍‌ସିସ୍ ଦେବା ଛଳନାରେ ଘିନୁଆକୁ ବନ୍ଦୀ କରାଗଲା । ହାଜତ୍‌ରେ ନାନା ଲୋକ ତାକୁ କଠିନ ଦଣ୍ଡାଦେଶ ସମ୍ପର୍କରେ ନାନା ପ୍ରକାର ସୂଚନା ଦିଅନ୍ତି । ଘିନୁଆ..... ନିର୍ବୋଧ ଘିନୁଆ ବିଶ୍ୱାସ କରେନି । ଶେଷକୁ ଦିନେ ଡେପୁଟି କମିଶନରଙ୍କଠାରୁ ପରିଷ୍କାର ବୁଝିଲା... "ପୂର୍ବରୁ ସେ ବାଘ ଭାଲୁ ମାରୁଥିଲା ବୋଲି ସଙ୍ଗେ ସଙ୍ଗେ ବକସିସ୍ ପାଉଥିଲା । ଏବେ ମାରିଛି ମଣିଷ । ଏଥର କି ବକସିସ୍ ପାଇବ ତାହା ପାଞ୍ଚ ଛ'ଜଣ ତ ଫେର୍ ବିଚାର ଠିକ୍ କରିବେ ।" ସାହେବର କଥାକୁ ଘିନୁଆ ଅବିଶ୍ୱାସ କରିପାରିଲାନି ।

ଘିନୁଆ ହତ୍ୟା କରିଛି ଗୋବିନ୍ଦ ସରଦାରକୁ । ଗୋବିନ୍ଦ ସରଦାର ସମାଜର ଏକ ଦୁଷ୍ଟବ୍ରଣ । କେତେ ଲୋକଙ୍କୁ ସେ ମାରିଛି; "କେତେ ଲୋକଙ୍କୁ ଉଚ୍ଛନ୍ନ କରିଛି, କେତେ ସ୍ତ୍ରୀ ଲୋକଙ୍କର ଇଜ୍ଜତ ନେଇଛି... ଘିନୁଆର ସବୁ ଜମିବାଡ଼ି ମଧ୍ୟ ନିଜର କରିଛି ।" ଦିନକର କଥା । ଘିନୁଆର ଅନୁପସ୍ଥିତିରେ ତାର ସ୍ତ୍ରୀ ଉପରେ ଗୋବିନ୍ଦ ସରଦାର ଅତ୍ୟାଚାର କରିବାକୁ ବସିଥିଲା । ଦୈବାତ୍ ଘିନୁଆ ପହଞ୍ଚିଗଲା । ଗୋବିନ୍ଦ ସରଦାର ପଳାଇଯାଇ ପାରିଲାନି ।

ଶିକାରୀ ଘିନୁଆର ସେ ହୋଇଛି ଶିକାର । ବାଘ ଭାଲୁ ଅପେକ୍ଷା ଗୋବିନ୍ଦ ସରଦାରକୁ ଲୋକେ ବେଶୀ ଭୟ କରୁଥିଲେ । ତାକୁ ଶିକାର କରି ସମାଜର ମଙ୍ଗଳ କରିଛି ବୋଲି ଘିନୁଆ ମନେ ମନେ ଆହ୍ଲାଦିତ ହୋଇଛି । ତାର ପୂର୍ଣ୍ଣ ବିଶ୍ୱାସ ସେ ମୋଟା ବକସିସ୍ ପାଇବ । ତେଣୁ ଫାଶିକାଠ ସମ୍ମୁଖରେ କଳା କନାର ଘୋଡ଼ଣୀ ଭିତରେ ବି ଘିନୁଆ ବକସିସ୍‌ର ରଙ୍ଗୀନ୍ ସ୍ୱପ୍ନ ଦେଖିଛି......ସେହି ସ୍ୱପ୍ନର ଭିତରେହିଁ ଘିନୁଆର ଲୟ ହୋଇଥାଇ ପାରେ କିନ୍ତୁ ଶୋଷକ ବିରୁଦ୍ଧରେ, ଅତ୍ୟାଚାରୀ ବିରୁଦ୍ଧରେ ତାର ସଫଳ ବିକ୍ଷୋଭ ପାଇଁ ବିଦ୍ରୋହୀ ଘିନୁଆ ଚିର ଅମର । ନିଷ୍ପାପ ଘିନୁଆର କରୁଣ ପରିଣତି ପାଠକ ପାଠିକାଙ୍କ ଚକ୍ଷୁ ଅଶ୍ରୁଳ କରିପାରିଛି ।

‘ଶିକାର’ ଗଳ୍ପରେ ଘିନୁଆର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଭିତରେ ପରୋକ୍ଷରେ ସମସାମୟିକ ରାଜନୀତିର ଲେଖକ ଯେଉଁ ସୂକ୍ଷ୍ମ ଇଙ୍ଗିତ ଦେଇଛନ୍ତି ତାହା ପ୍ରଣିଧାନର ବିଷୟ— "କିଛି ବର୍ଷ ତଳେ ମେଳିଆ ହଁପଠ୍‌ସିଂର ମୁଣ୍ଡକାଟି ଥିବାରୁ ସାହେବ ଡୋରାକୁ ପାଁଶ ଟଙ୍କା ବକସିସ୍ ଦେଇଥିଲା । ହଁପଠସିଂ ତ ଏକରକମ ଭଲ ଲୋକ ଥିଲା । ସେ ସ୍ତ୍ରୀ ଲୋକଙ୍କ ଇଜ୍ଜତ ନେଇ-ନାହିଁ, କି କାହାର ଜମିବାଡ଼ି ଦଖଲ କରିନାହିଁ । ସେ କେବଳ ଖଜଣାଖାନା ଲୁଟି କରିଥିଲା, ଆଉ କେତେଜଣ ସିପାହୀଙ୍କୁ ମାରିଥିଲା । ଗୋବିନ୍ଦ ସରଦାର କିନ୍ତୁ ବଡ଼ ଭୟଙ୍କର ଲୋକ...ତାକୁ ମାରିଥିବାରୁ ଘିନୁଆକୁ ଅଧିକ ବକସିସ୍ ମିଳିବା ଉଚିତ ।"

ଆଇନର ସୂକ୍ଷ୍ମଜାଲ ଭିତରେ ଶିକାରୀ ଘିନୁଆ ସମାଧି ଲଭିଛି ସତ୍ୟ...କିନ୍ତୁ ବିପ୍ଳବୀ ଘିନୁଆର ମୃତ୍ୟୁନାହିଁ ।

# ପ୍ରେମର ପରମାପକ

ବୈଜ୍ଞାନିକମାନେ ସୃଷ୍ଟିର ଅଣୁ ପରମାଣୁକୁ କେନ୍ଦ୍ରକରି ଯେଉଁପରି ଗବେଷଣା କରିଛନ୍ତି ସୁସାହିତ୍ୟିକ ନିତ୍ୟାନନ୍ଦବାବୁ ମଣିଷ ଜୀବନର ପ୍ରତ୍ୟେକ ବିଭାଗ ଓ ବିଭବ, ତାହାର ହୃଦୟର ପ୍ରତିଟି ସ୍ପନ୍ଦନ ଓ ଅନୁଭୂତିକୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟରେ ଠିକ ସେହିପରି ଗବେଷଣା ଚଳାଇଛନ୍ତି । ଏହି ଗବେଷଣା ପାଇଁ ତାଙ୍କର ପ୍ରଖର ଧୀଶକ୍ତି, ଅନୁଭୂତିର ଗଭୀରତା ଶିଳ୍ପୀସୁଲଭ ଦୃଷ୍ଟିକୋଣ ଓ କବି ପ୍ରତିଭା ଅନୁକୂଳ ବାତାବରଣ ସୃଷ୍ଟି କରିପାରିଛି । ପ୍ରେମର ପରିମାପକ ତାହାର ଏକ ଦୃଷ୍ଟାନ୍ତମାତ୍ର ।

ସାଧନା ମଗ୍ନ ସାଧକର ସମୟଜ୍ଞାନ ରହେନାହିଁ । ସେ ସାଧକ, ସାଧନା କାଳରେ ସମୟ ଯେ, ତାହାର ନିତ୍ୟ ନୈମିତ୍ତିକ ସ୍ରୋତରେ ବହିଚାଲିଛି ସେ ତାହା ଆଦୌ ଅନୁଭବ କରିପାରେ ନାହିଁ । ଏହି ସତ୍ୟକୁ ଉଦ୍‌ଘାଟନ କରିଛନ୍ତି ନିତ୍ୟାନନ୍ଦ ବାବୁ "ପ୍ରେମର ପରମାପକ"ର ବିଶ୍ୱରୂପ ଚରିତ୍ର ମାଧ୍ୟମରେ । ନାଳନ୍ଦାର ଅମୂଲ୍ୟ ରତ୍ନ ବିଶ୍ୱରୂପ ନିରବଚ୍ଛିନ୍ନ ସାଧନାପଥ ଉଦ୍ଭାବନ କରିଛି ପ୍ରେମର ପରମାପକ ଯନ୍ତ୍ର । କିନ୍ତୁ ସେଦିନ ଯେଉଁ ରାଜବାଳାର ଅନ୍ତରର ପ୍ରେମ ମାପିବା ପାଇଁ ଏ ଧରଣର ଏକ ଯନ୍ତ୍ରର ଉଦ୍ଭାବନ କରିବାପାଇଁ ସେ ବ୍ୟାକୁଳ ହୋଇ ଉଠିଥିଲା, ସାଧନା ସିଦ୍ଧ ହେବା ପୂର୍ବରୁ ମଗଧର ସେହି ରାଜକୁମାରୀର ବିଦେହରେ ବିବାହ ହୋଇଗଲା । ଉଦ୍ଭାବିତ ଯନ୍ତ୍ରରେ ତାଙ୍କ ଅନ୍ତରର ପ୍ରେମ ମାପିବାପାଇଁ ସାଧକ ବିଶ୍ୱରୂପ ଯେତେବେଳେ ବ୍ୟାକୁଳ ସେତେବେଳେ ସେ ବିଦେହର ରାଜମାତା । ବହୁକଷ୍ଟରେ ବିଶ୍ୱରୂପ ସାକ୍ଷାତ୍ ପାଇଁ ଅନୁମତି ପାଇଲା ସତ୍ୟ କିନ୍ତୁ ସାକ୍ଷାତ୍ ମାନେ ଗୋଟିପଣ ଥରି

ଉଠିଲା ସେ । ରୁଗ୍‌ଣା, ଦନ୍ତହୀନା, ଲୋଳଚର୍ମୀ ବିଦେହୀର ଜୀବନମାତାର ଭିତରେ ଅତୀତର ମଧୁର ସ୍ମୃତିକୁ ଆଉଜେମାକୁ ଖୋଜିବାକୁ ଯାଇ ସେ ନିରାଶ ହେଲା···ହାତରୁ ତାର ଖସିପଡ଼ିଲା ଦୀର୍ଘ ୫୦ବର୍ଷର ସାଧନାର ଫଳ—"ପ୍ରେମର ପରିମାପକ" ।

ଗଳ୍ପଟିର ବିଷୟବସ୍ତୁ ତଥା ପ୍ରକାଶଭଙ୍ଗୀ ମଧ୍ୟ ଅତି ସୁନ୍ଦର ହୋଇପାରିଛି ।

## ଶେଷ ଦିବସ

ଅସାଧାରଣ ପ୍ରତିଭା ବଳରେ କବି ଗୋଦାବରୀଶ ମହାପାତ୍ର ଆଜି ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଅଥଚ ଉଲ୍ଲେଖ ଯୋଗ୍ୟ ସ୍ଥାନ ଅଧିକାର କରି ପାରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକ ମାନବ ଜୀବନର ଗଭୀର ଆଲୋଚନା । ସମସାମୟିକ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ପରିବେଶ ଭିତରୁ ସେ ତାଙ୍କ ଗଳ୍ପ ପାଇଁ ବାଛି ନେଇଛନ୍ତି ଅତି ମୂଲ୍ୟବାନ ଉପାଦାନ । ଶ୍ରୀଯୁକ୍ତ ମହାପାତ୍ର ମୁଖ୍ୟତଃ ଜଣେ ସମାଜ ସଂସ୍କାରକ । ଆମର ଏହି ସମାଜର ଅନ୍ତଃସ୍ଥଳରେ ଯେଉଁ ଶୋଷଣ, ଅତ୍ୟାଚାର ଓ ଅନାଚାରର ତୀବ୍ର ବହ୍ନିଶିଖା ଜାଜ୍ୱଲ୍ୟମାନ ସେଥିପ୍ରତି ଅଙ୍ଗୁଳି ସଙ୍କେତ କରି ତାର ମାଧ୍ୟମରେ ସଂସ୍କାର ସକାଶେ ସେ ଦେଇ ଆସିଛନ୍ତି ସ୍ପଷ୍ଟ ନିର୍ଦ୍ଦେଶ ।

'ଶେଷ ଦିବସ' ଗୋଦାବରୀଶ ବାବୁଙ୍କ ଅନ୍ୟତମ ଅପରୂପ ସୃଷ୍ଟି । ଖୋରଧାର ଏକ ବନ୍ଦୋବସ୍ତ କାଳୀନ ଘଟଣା ଗଳ୍ପଟିର ପ୍ରାଣକେନ୍ଦ୍ର । ଗାଁର କୃଟଙ୍କୀମାନଙ୍କ ଜୀବନରେ ବନ୍ଦୋବସ୍ତ ହେଉଛି ପୁଅବାର । ସେମାନଙ୍କର ଷଡ଼ଯନ୍ତ୍ରର ଶିକାର ହୋଇ ଅଗଣିତ ନରନାରୀ ସେତେବେଳେ ନିଃସ୍ୱ ହୁଅନ୍ତି······ଆଉ ସେହି ସରଳ,

ନାୟିକମାନଙ୍କର ଝାଲବୁହା ଧନରେ କୁଚକ୍ରୀମାନଙ୍କର ସୁରମ୍ୟ ହର୍ମ୍ୟ ଗାଁ ମାଟିରେ ମୁଣ୍ଡଟେକେ । ଏହାର ଏକ ହୃଦୟସ୍ପର୍ଶୀ ଚିତ୍ର 'ଶେଷ ଦିବସ' ରେ ଦେଖିବାକୁ ମିଳେ ।

## ଦ୍ୱିତୀୟା ତତ୍ପୁରୁଷ

ବହୁତ କଥାକୁ ଅଳ୍ପରେ ଅତି ସୁସଂଯତ ଓ ସୁନ୍ଦର ଭାବରେ କହି ପାଠକର ମନରେ ଚିରନ୍ତନୀ ରେଖାପାତ କରିବାରେ ଶ୍ରୀଯୁକ୍ତ ରାଜକିଶୋର ରାୟ ଯଥେଷ୍ଟ ସଫଳତା ହାସଲ କରିଛନ୍ତି । ଶ୍ରୁତିମଧୁର ଶାବ୍ଦିକ ଯୋଜନା ତାଙ୍କ ଗଳ୍ପଗୁଡ଼ିକର ଅନ୍ୟତମ ବୈଶିଷ୍ଟ୍ୟ । ତାଙ୍କ ପ୍ରାଞ୍ଜଳ ଶୈଳୀ ଯେ କୌଣସି ପାଠକକୁ ମଧ୍ୟ ଅଭିଭୂତ କରେ । 'ଦ୍ୱିତୀୟା ତତ୍ପୁରୁଷ' ପାରିବାରିକ ଜୀବନର ଅତି ସାଧାରଣ ଘଟଣାକୁ କେନ୍ଦ୍ରକରି ଲିଖିତ ହୋଇଥିଲେ ମଧ୍ୟ ଶ୍ରୀଯୁକ୍ତ ରାୟଙ୍କ ଯାଦୁକରୀ ପ୍ରତିଭା ଗଳ୍ପଟିକୁ ସୁଖପାଠ୍ୟ ଓ ଉପଭୋଗ୍ୟ କରି ପାରିଛି ।

## ମଧୁମତୀର ରାତି

ଓଡ଼ିଆ ସାହିତ୍ୟର ଦିଗ୍‌ବଳୟରେ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ଅଭ୍ୟୁଦୟ ବେଶୀ ଦିନର କଥାନୁହେଁ । ୧୯୪୧ ମସିହାରୁ 'ସହକାର'ରେ ତାଙ୍କର ଗଳ୍ପ ପ୍ରକାଶ ପାଏ । ଏହି ଅଳ୍ପକାଳ ମଧ୍ୟରେ ଶାଳ୍ପିକ ହିସାବରେ ସେ ଅଭୂତପୂର୍ବ ଖ୍ୟାତିଲାଭ କରିଛନ୍ତି । ତାଙ୍କର ପ୍ରତ୍ୟେକ ଗଳ୍ପ ସୁପରିକଳ୍ପିତ—ଭାଷାର ମାଧୂର୍ଯ୍ୟ ସହିତ ପ୍ରକାଶ ଭଙ୍ଗୀର ଗୁରୁତ୍ୱ ତାଙ୍କ ଗଳ୍ପଗୁଡ଼ିକୁ ଅତି ଉଚ୍ଚକୋଟୀର କରିପାରିଛି । 'ମଧୁମତୀର ରାତି' ତାହାର ଏକ ନିଦର୍ଶନ ମାତ୍ର ।

'ମଧୁମଣ୍ଟୀର ରାତ୍ରି' ପ୍ରଥମେ 'ମଧୁମଣ୍ଟୀର ଅଭିସାର' ନାମରେ ମାସିକ 'ଝଙ୍କାର'ରେ ପ୍ରକାଶ ଲାଭ କରିଥିଲା । କିନ୍ତୁ ଶ୍ରୀଯୁକ୍ତ ମହାନ୍ତିଙ୍କ ନିର୍ଦ୍ଦେଶ କ୍ରମେ ସଂକଳନରେ ଗଳ୍ପଟିର ନାମ "ମଧୁମଣ୍ଟୀର ରାତ୍ରି" ରଖାଯାଇଛି । ସମାଲୋଚକର ଦୃଷ୍ଟିଭଙ୍ଗୀ ନେଇ ଗଳ୍ପଟିର ଅନୁଧ୍ୟାନ କଲେ ସ୍ପଷ୍ଟରୂପେ ପ୍ରତିଭାତ ହୁଏ ଯେ 'ମଧୁମଣ୍ଟୀର ରାତ୍ରି' ନାମକରଣ ଭିତରେ ଯେତେ ଯେପରି ଗଳ୍ପଟିର ସମସ୍ତ ଅନ୍ତଃ-ସୌନ୍ଦର୍ଯ୍ୟ ବିକଶି ଉଠିଛି ।

ମଧୁମଣ୍ଟୀ ବାସ୍ତବରେ ମଧୁମଣ୍ଟୀ.....ତାର ରୂପାନଳରେ ବଣିକ, ସୌଦାଗର, ପଣ୍ଡିତ ସମସ୍ତେ ନିଜକୁ ଆହୁତ ଦେବାରେ ଗର୍ବ ଅନୁଭବ କରିଛନ୍ତି । ବିଳାସ ବ୍ୟସନର ଅଗାଧ ସାଗରରେ ନିତ୍ୟ ଅବଗାହନ କରିଛି ସେ । ତଥାପି.....ତଥାପି ମଧୁମଣ୍ଟୀ ଜୀବନର ପ୍ରକୃତ ସ୍ୱାଦ କଣ ପାଇ ପାରିଛି ? ? ? 'ଅନ୍ୟର ପଦତଳେ ନିବେଦିତା ହେବାହିଁ କଣ କୁସୁମର ଭବିତବ୍ୟ' ?— ମଧୁମଣ୍ଟୀର ଏହି ପ୍ରଶ୍ନର ଭିତରେ ତା'ର ବିକଳ ପ୍ରାଣର ଅଭ୍ରାନ୍ତ ସ୍ପର୍ଶ ପାଠକ ପାଠିକାଙ୍କୁ ଅଭିଭୂତ କରେ । ତାର ବିକ୍ଷୁବ୍ଧ ପ୍ରାଣର ଏହି ଗୋଟିଏ ପ୍ରଶ୍ନ ଭିତରେ ଯେପରି ଗୋଟିଏ ଛଳ ଛଳ ନାରୀପ୍ରାଣ କାରୁଣ୍ୟର ପ୍ରବାହ ଭିତରେ ଭାସିଯାଇଛି ଠିକ୍ ସେହିପରି । "ପୁନର୍ଜନ୍ମ"ର କାମନା ଭିତରେ ତା'ର ପ୍ରକୃତ ମର୍ମବାଣୀ ଫୁଟି ଉଠିଛି ।

ଭାଷାର ଇନ୍ଦ୍ରଜାଲ ଭିତରେ, ପ୍ରକାଶ ଭଙ୍ଗୀର ଅଭିନବତ୍ୱରେ ଅଶ୍ଳୀଳତାକୁ ମଧ୍ୟ କିପରି ସୁଚତୁର ଭାବରେ ପାଠକ ପାଠିକାର ଦୃଷ୍ଟିର ଅନ୍ତରାଳକୁ ନୀତ ହୁଏ 'ମଧୁମଣ୍ଟୀର ରାତ୍ରି' ଗଳ୍ପରେ ତାହାହିଁ ସବିଶେଷ ଅନୁଧ୍ୟାନ ଯୋଗ୍ୟ । ସ୍ଥୂଳତଃ 'ମଧୁମଣ୍ଟୀର ରାତ୍ରି' ଶ୍ରୀଯୁକ୍ତ ମହାନ୍ତିଙ୍କ ମୌଳିକ ପ୍ରତିଭାର ଜ୍ୱଳନ୍ତ ଦ୍ୟୋତକ ।

## ଯଜ୍ଞ ଆହୁତ

'ଯଜ୍ଞ ଆହୁତ'ର ଲେଖକ ଶ୍ରୀ ଗୋପୀନାଥ ମହାନ୍ତି ଓଡ଼ିଆ ସାହିତ୍ୟର ସମାଲୋଚକ ତଥା ସାହିତ୍ୟ ପ୍ରେମୀଙ୍କର ନିକଟରେ ସୁପରିଚିତ । ନିଜର ଅସାଧାରଣ ପ୍ରତିଭା ବଳରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ସେ ଯଥାର୍ଥରେ ଯୁଗାନ୍ତର ସୃଷ୍ଟି କରିପାରିଛନ୍ତି । ଶତାବ୍ଦୀ ଶତାବ୍ଦୀ ଧରି ଉପେକ୍ଷିତ କନ୍ଧ, କୋହ୍ଲ, ସାନ୍ତାଳ, ପ୍ରଭୃତି ଆଦିବାସୀ ସମ୍ପ୍ରଦାୟ ଜୀବନର ପ୍ରତିଟି ସ୍ପନ୍ଦନକୁ ସେ ଅନୁଭବ କରିଛନ୍ତି । ଯୁଗ ଯୁଗର ଅବହେଳିତ ହରିଜନ ଓ ଆଦିବାସୀର ଜୀବନକୁ କେନ୍ଦ୍ରକରି ସେ ଲେଖିଛନ୍ତି ଉପନ୍ୟାସ ଓ ଗଳ୍ପ— ସ୍ୱକୀୟତାର ଦୀପ୍ତିରେ ସେ ଗୁଡ଼ିକ ଚିରଉଜ୍ଜ୍ୱଳ । ସମାଜର ମର୍ମସ୍ଥଳରେ ପ୍ରବାହମାନ ନିତ୍ୟ ନୂତନ ଭାବଧାରାର ସ୍ରୋତ ସେହି ଗୋଷ୍ଠୀମାନଙ୍କ ଉପରେ କିପରି ପ୍ରଭାବ ପକାଉଛି ଗୋପୀନାଥ ବାବୁ ବିଭିନ୍ନ ଗଳ୍ପରେ ତାହା ପ୍ରଦର୍ଶନ କରିଛନ୍ତି ।

'ଅମୃତର ସନ୍ତାନ' ଓ 'ପରଜା' ଉପନ୍ୟାସରେ ଏ ଦେଶର ଅଗଣିତ ପାଠକ ପାଠିକା ଯେଉଁ ବଳିଷ୍ଠ ପ୍ରତିଭାର ବିମଳ ସ୍ପର୍ଶ ପାଇ ପାରିଛନ୍ତି 'ଯଜ୍ଞ ଆହୁତ' ଗଳ୍ପରେ ସେହି ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ସେ ପାଇ ପାରିବେ ଏଥିରେ ମତଦ୍ୱୈଧର ଅବକାଶ ନାହିଁ ।

## ତନ୍ନି ପୁରୁଷ

'ତନ୍ନି ପୁରୁଷ'ର ଲେଖକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ ଉଚ୍ଚକୋଟୀର ଶିଶୁସାହିତ୍ୟ ସୃଷ୍ଟିକରି ବିଶେଷ ଖ୍ୟାତି ଅର୍ଜ୍ଜନ କରିପାରିଛନ୍ତି । ଏତଦ୍‌ବ୍ୟତୀତ ସମାଜରେ ନୂତନ ଚେତନା ପାଇଁ ଏବଂ ଜାତିକୁ ଯୁଗୋପଯୋଗୀ ଶିକ୍ଷା ଦେବା ପାଇଁ ସେ ନିଜ ବିଭିନ୍ନ ଲେଖା ମାଧ୍ୟମରେ ଯଥାଯଥ ପ୍ରୟାସ କରିଛନ୍ତି । 'ତନ୍ନିପୁରୁଷ' ଗଳ୍ପଟି ତାର ଏକ ବଳିଷ୍ଠ ଦୃଷ୍ଟାନ୍ତ ।

'ଜନପୁରୁଷ' ମୁଖ୍ୟତଃ ଏକ ଉଦ୍ଦେଶ୍ୟମୂଳକ ଗଳ୍ପ । ଶିଳ୍ପ ବିପ୍ଳବ ପରେ ପରେ ସମାଜରେ ଦୁଇଟି ପ୍ରଧାନ ଗୋଷ୍ଠୀ ଦେଖା ଦେଇଛନ୍ତି— ଗୋଟିଏ ହେଉଛି ପୁଞ୍ଜିପତି ଓ ଅନ୍ୟଟି ହେଉଛି ଶ୍ରମିକ । ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ସୁବୁଝାମଣାର ଅଭାବରୁ ପୁଞ୍ଜିପତି ହୋଇଛି ଶୋଷକ ଓ ଶ୍ରମିକ ଶୋଷିତ । ସମାଜର ସର୍ବାଙ୍ଗୀନ ଉନ୍ନତିପାଇଁ ଉଭୟଙ୍କ ମଧ୍ୟରେ ମୈତ୍ରୀଭାବ ଚିର କାମ୍ୟ । ନିଷ୍ପେଷିତ ଶ୍ରମିକ ମଧ୍ୟରେ ଆଜ ଯୁଗୋଚିତ ଚେତନା ଆସିଛି । ପୁଞ୍ଜିପତି ମଧ୍ୟ ବୁଝିପାରିଛି ଯେ ପୁରୁଷ ପୁରୁଷ ଧରି ଶ୍ରମିକମାନଙ୍କୁ ଯେଉଁ ଶୋଷଣ କରାଯାଇଛି ତାର ପ୍ରତିଫଳକୁ ଏଡ଼ାଇବା ପାଇଁ ସେମାନଙ୍କୁ କଳକାରଖାନାରେ ସେମାନଙ୍କର ନ୍ୟାଯ୍ୟ ଅଧିକାରକୁ ସ୍ୱୀକାର କରିବାକୁହେବ—କେବଳ ମାଲିକର କଲ୍ୟାଣ ଦୃଷ୍ଟିରୁ ନୁହେଁ, କେବଳ ଶ୍ରମିକର କଲ୍ୟାଣ ଦୃଷ୍ଟିରୁ ନୁହେଁ—ଅଧିକନ୍ତୁ ସମଗ୍ର ସମାଜର କଲ୍ୟାଣ ଦୃଷ୍ଟିରୁ 'ଜନପୁରୁଷ' ଗଳ୍ପରେ ତାହାହିଁ ପ୍ରତିପାଦିତ ହୋଇଛି······ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ଚିରକାମ୍ୟ ସୁସମ୍ପର୍କ ପ୍ରତିଷ୍ଠା ହୋଇଛି······ ଦୁଇପୁରୁଷଧରି କାର୍ଯ୍ୟକାରୀ ହୋଇଥିବା ଶୋଷଣର ନିର୍ମମ ଯୋଜନା ଧ୍ୱଂସ ହୋଇଯାଇଛି ଜନପୁରୁଷର ନୂତନ ଚେତନା ଓ ଦାୟିତ୍ୱବୋଧର ପ୍ରବଳ ସ୍ରୋତରେ ।

ସ୍ଥୂଳତଃ "ଗଳ୍ପଭାରତୀ"ରେ ଯେଉଁ ଯେଉଁ ଗାଳ୍ପିକମାନଙ୍କର ଗଳ୍ପ ସନ୍ନିବେଶିତ ହୋଇଛି ସେମାନେ ସମସ୍ତେ ଓଡ଼ିଆ ସାହିତ୍ୟରେ ସୁପରିଚିତ । ଓଡ଼ିଆ ଗଳ୍ପସାହିତ୍ୟ କିପରି କ୍ରମବିକାଶ ହୋଇଛି ତାଙ୍କର ଆଲୋଚନା କାଳରେ ସେମାନଙ୍କର ସାହିତ୍ୟ ସରଣୀର ଅନୁଧ୍ୟାନ ଅତ୍ୟାବଶ୍ୟକ ।

**ଶ୍ରୀ ଅସିତ୍ କର** ଏମ୍. ଏ.

କଟକ-୧

ଧୂର୍ଜଟୀ (ବ୍ୟାସକବି ଫକୀରମୋହନ)

# ରେବତୀ

"But oft some shining April morn
Is darkened in an hour
And blackest grief's over joyous home,
Alas! unseen may lower."

*Rev. J. H. Gurney*

"ଲୋ ରେବ୍ତୀ—ଲୋ ରେବୀ—ଲୋ ଟିଅଁ, ଲୋ ଦୁଲୀ—"

କଟକ ଜିଲ୍ଲାର ହରିହରପୁର ପରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର, ଅଗିଲ୍ ପିଛୁଲ୍ ଚୁରି ବଖରା, ଖଞ୍ଜା ପାଖରୁ ଗୁହାଳିଆରେ ଢେଙ୍କିଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡ ଦୁଆର, ପଛକୁ ବାଡ଼ି ଦୁଆର, ଦାଣ୍ଡ ଦୁଆର ମେଲଣରେ ଦାଣ୍ଡଲୋକେ ବସା ଉଠା କରନ୍ତି, ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ

ଦରମା ଦୁଇଟଙ୍କା, ଦରମା ଛାଡ଼ ପାଉତି ବିଶୋଧନୀ ବାହା ଲକ୍ଷଣା ଇତ୍ୟାଦିରୁ ଦୁଇ ପଇସା ହାତପେଠ ହୁଏ । ସବୁ ମିଶାଇଲେ ମାସକୁ ଗୁରି ଟଙ୍କାରୁ ଊଣା ହେବନାହିଁ, ସଂସାର ଏକରକମ ଚଳେ । ଏଟା ହେଲ ନାହିଁ, ସେଟା ଘରେ ନାହିଁ, ଏପରି କଥା ଘରର କାହାର ମୁହଁରୁ ଶୁଣା ଯାଏ ନାହିଁ । ବାଡ଼ିରେ ଶାଗ ମାଗ ଛାଡ଼ି ସଜନା ଦୁଇଗଛ । ଘରେ ଲଗା ପଡ଼ିଆ ବଳଷ-ବିଆଣୀ ଗାଈ ଦୁଇଟା ବନ୍ଧା; ଦୁଧ ଟିକିଏ, ଘୋଳ ମନ୍ଦାଏ ହାଣ୍ଡିତଳେ ଲଗିଥାଏ । ବୁଢ଼ୀ ଚିଷ୍ଟୁ ମିଶାଇ ଘଷି ତାଡ଼ିଦିଏ, କାଠକଣା ବାଧେ ନାହିଁ । ଜମିଦାର ସାଢ଼େ ତିନିମାଣ ଜମି ଚଷିବାକୁ ଦେଇଅଛନ୍ତି, ଧାନ ବଢେ ନାହିଁ; କି କମେ ନାହିଁ । ଶ୍ୟାମଚନ୍ଦ୍ରଟି ବଡ଼ ସିଧା ସଳଖ ଲୋକ, ପ୍ରଜାମାନେ ମାନନ୍ତି; ସୁଖ ପାଆନ୍ତି । ବାପରେ ଧନରେ କହି ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ; କାହାରଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ପ୍ରଜାମାନେ ଖଜଣା ଦେଇ ପାଉତି ମାଗନ୍ତି ନାହିଁ, ସେ ଗୁରି ଅଙ୍ଗୁଳ ତାଳ ପତ୍ରରେ ଖଣ୍ଡେ ପାଉତି ଲେଖି ବଳେ ବଳେ ଗୁଳରେ ଗୁଞ୍ଜି ଦେଇଯାଏ । ଜମିଦାର ପିଆଦା ଆସିଲେ ଗାଁକୁ ଛାଡ଼େ ନାହିଁ, ଆପେ ହାତ ଓଠ ଧରି ଧୂଆଁ ଖିଆ ଦୁଇ ପଇସା ଦେଇ ବିଦାକରେ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଗୁରିଜଣ; ଆପେ ଦୁଇ ପରାଣୀ, ମା ବୁଢ଼ୀ; ଦଶ ବରଷର ଗୋଟିଏ ଝିଅ । ଝିଅଟିର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି 'କୃପାସିନ୍ଧୁ ବଦନ' ଗାଏ; ଆଉ ଆଉ ଭଜନ ଗାଏ; କେବେ କେବେ କାଠଦୀପ ରୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ, ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢେର ଭଜନ ଶିଖି ଗଲଣି, ତା ପିଲା ମନକୁ ଭଜନଗୁଡ଼ିକ ଖୁବ୍‌ମାନେ । ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ ଗାଁର

କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପା ପାଖରୁ ଗୋଟିଏ ଭଜନ ଶିଖିଥିଲା, ସେଇଟି ଗାଇଲେ ଶ୍ୟାମବନ୍ଧୁ ବଡ ଖୁସିହୁଏ । ପ୍ରତିଦିନ ସିଏ ଝିଅକୁ ଗାଇବାକୁ କହେ, ରେବତୀ ଗାଏ—

କାହାଟେ କରିବ ଗୁହାରି
ତୁମ୍ଭେ ନ ଚାହିଁଲେ ନାଥ ଗରବ ଯିବ ସରି ।
କରି ବା ନ କର ତ୍ରାଣ        ପଦେ ସମର୍ପିଛି ପ୍ରାଣ.
ହୃଦେ ଅଛି ତବ ନାମ ଧରି ।
ତୁମ୍ଭ ବିନା ନିଜଗତ ଶୂନ୍ୟ ହେ ହରି
ଶୀତଳକର ଜୀବନ ପ୍ରେମାମୃତ ଦାନକରି ।

ଦୁଇ ବରଷ ତଳେ ସ୍କୁଲ ଡେ: ଇନ୍‌ସ୍ପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ରାତିଏ ରହି ଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ ଚାରି ପାଞ୍ଚଜଣ ଲୋକ କୁହାପୋଛା କରିବାରୁ ଡିପୋଟି ବାବୁ ଓଡ଼ିଶା ବିଭାଗ ଇନ୍‌ସ୍ପେକ୍ଟରଙ୍କଠାକୁ ରିପୋର୍ଟ କରି ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକ ବେତନ ମାସକୁ ଚାରିଟଙ୍କା, ଏହି ଚାରିଟଙ୍କା ସରକାରରୁ ମିଳେ । ଏହାଛଡ଼ା ପ୍ରତି ପିଲା ମାସକୁ ଅଣାଏ ଲେଖାଏ ଦିଅନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲର ଅବଧାନ ବିଭାଗର ଉତ୍ତୀର୍ଣ୍ଣ ଛାତ୍ର—ନାମ ବାସୁଦେବ । ନାମଟି ଯେପରି ବାସୁଦେବ, ମନୁଷ୍ୟଟା ମଧ୍ୟ ସେହିପରି ବାସୁଦେବ । ଟୋକାଟାର ଭିତର ବାହାର ସବୁ ସୁନ୍ଦର; ଗାଁ ମଝିରେ ଚାଲି ଯିବାବେଳେ ମୁଣ୍ଡଟେକି କାହାକୁ ଚାହେଁନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ, ଯେମନ୍ତ ଗୋଟିଏ ଚାଉଳରେ ଗଢ଼ା । ପିଲାଦିନେ ପିହୁଡ଼ା ରୋଗ ହୋଇଥିଲା, ତା ମାଁ ମୁହଁରେ ତତଲା ବତଲ ଚିହ୍ନ ଦେଇଥିଲା, ସେ ଚିହ୍ନ ଆଜଯାଏଁ ଅଛି । ବରଂ ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲା କାଳରୁ ମା

ବାପ ଛେଉଣ୍ଡ଼, ମାମୁଁ ଘରେ ରହି ମଣିଷ ହୋଇଅଛି । ବାସୁଦେବ ଜାତିରେ କରଣ । କେବେ ପୂନେଇ ଗୁରୁବାରରେ ପିଠାଟା ପଣାଟା ହେଲେ ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ—ବାପା ବାସୁ, ସଞ୍ଜବେଳେ ଟିକିଏ ଆମ ଘରକୁ ଯିବୁ, ତୁମ ମାଉସୀ ଡାକି ଅଛନ୍ତି । ଏହିପରି ଯିବା ଆସିବାରେ ସେମାନଙ୍କ ମଧ୍ୟରେ ଗୋଟିଏ ମାୟା ଲଗି ଗଲାଣି । ରେବତୀମାଁ ବାସୁକୁ ଦେଖିଲେ କହେ,ଆହା ମାଆଛେଉଣ୍ଡ଼ିଟି, କିଏ ଖାଏ—କିଏ ତା ଖାଇବା ଦେଖୁଛି । ବାସୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଣ୍ଟାଏ ଘଣ୍ଟାଏ ବସି ଆସେ । ବାସୁକୁ ଦୂରରୁ ଦେଖିଲେ ବାସୁଭାଇ ଆଇଲେ, ବାସୁଭାଇ ଆଇଲେ ବୋଲି ରେବତୀ ପାଟିକରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣାଭଜନଗୁଡ଼ିକ ବାସୁକୁ ଶୁଣାଏ । ବାସୁକୁ ସେହି ଗୀତ ନୂଆ ନୂଆ ପରି ଲଗେ । ଦିନେ ଏ କଥା ସେ କଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ କଟକରେ ଗୋଟିଏ ଝିଅସ୍କୁଲ ଅଛି, ସେଠାରେ ଝିଅମାନେ ପଢ଼ନ୍ତି, ଲେଖା ସିଆଁ ଶିଖନ୍ତି । ସେହି ଦିନଠାରୁ ରେବତୀକୁ ପାଠ ପଢ଼ାଇବାକୁ ଶ୍ୟାମବନ୍ଧୁର ମନହେଲା ଏବଂ ଆପଣା ମନର କଥା ବାସୁଦେବକୁ କହିଲା । ବାସୁ ଶ୍ୟାମବନ୍ଧୁକୁ ପିତୃତୁଲ୍ୟ ମାନେ, କହିଲା ଆଜ୍ଞା ସେହି କଥାଟା ମୁଁ କହିବ କହିବ ହେଉଥିଲି । ଦୁଇ ଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା, ଦୁଇ ଚାଲାରେ ଘର ଭିତରକୁ ଯାଇ ମାକୁ ଆଉ ଜେଜୀକୁ, ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି, ଖବର ଦେଲା । ମା କହିଲେ ହଉ ହଉ ପଢ଼ିବୁ । ଜେଜୀ କହିଲେ ପାଠ କଣ ଲୋ, ମାଇକିନିଆ ଝିଅଟା ପାଠ କଣ ? ରନ୍ଧା ବଢ଼ା ଶିଖ, ପିଠା ପଣା କରିବାକୁ ଶିଖ, ହୋଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କଣ ?

ରାତରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତ ଖାଉଅଛନ୍ତି, ରେବତୀ ସାଙ୍ଗରେ ବସି ଖାଉଅଛି । ବୁଢ଼ୀ ଆଗରେ ବସି—ଭାତ ମୁଠାଏ ଆଣ, ଡାଲିପାଣି ଟିକାଏ ପକେଇ ଯା, ଲୁଣ ଟିକାଏ ଦେ, ଇତ୍ୟାଦି କଥା ବୋହୂପ୍ରତି ଆଦେଶ କରୁଅଛନ୍ତି । କଥାରେ କଥାରେ ବୁଢ଼ୀ କହି ବସିଲେ, ହଁରେ ଶ୍ୟାମ—ରେବା ପାଠ ପଢ଼ିବ—ପାଠ କ'ଣ ରେ, ତଉଲ ଝିଅର ପାଠ ପଢ଼ା କ'ଣ ? ଶ୍ୟାମବନ୍ଧୁ କହିଲେ ହେଉ, କହୁଛୁତ ପଢୁ । ଝିଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ, ଭାଗବତ ବୋଲି ପାରନ୍ତି । ବୈଦେହୀଶ ବିଳାସ ଛାନ୍ଦ ଗାଆନ୍ତି । ରେବତୀ ଭାରି ଖପା ହୋଇଯାଇ ଜେଜୀକୁ ଗାଳିଦେଇ କହିଲା, ଯାଲୋ ବୁଢ଼ୀ ଉଚୁରଣ୍ଡା । ତାହାବାଦ୍ ଅଳି କରି ବାପାକୁ କହିଲା, "ନା ବାପା, ମୁଁ ପାଠ ପଢ଼ିବି ।" ଶ୍ୟାମବନ୍ଧୁ କହିଲେ ହଁ-ହଁ-ତୁ ପଢ଼ିବୁ । ସେ ଦିନ କଥା ଏତିକି ।

ତହିଁ ଆରଦିନ ଉପର ଓଳି ବାସୁଦେବ ସୀତାନାଥ ବାବୁଙ୍କ ପ୍ରଥମପାଠ ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସିହୋଇ ବାପା ପାଖରେ ବସି କିତାବର ମୂଳ ପୃଷ୍ଠାଠାରୁ ଶେଷ ପୃଷ୍ଠା ଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ ଘୋଡ଼ା ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ ଘୋଡ଼ା ବାନ୍ଧି ଖୁସି ହୁଅନ୍ତି, କେହି ହାତୀ ଘୋଡ଼ା ଚଢ଼ି ଖୁସିହୁଏ । ଆମ୍ଭ ରେବା ଛବିଟା ଦେଖି ଖୁସି । ରେବା ଧାଇଁଯାଇ ମାକୁ କିତାବର ଛବି ସବୁ ଦେଖାଇଲା । ଜେଜୀ କାଅଁରୁ ବଙ୍କେଇ ହୋଇ କହିଲା ହଁ—ଯା-ଯା । ରେବା ତାହାକୁ ଦୂର ଦୂର ଗାଳି ଦେଇ ଫେରି ଆସିଲା ।

ଆଜି ଦିନଟି ଭଲ—ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଢ଼ମାର ଗାଧୋଇ ନୂଆଲୁଗା ଖଣ୍ଡିଏ ପିନ୍ଧି ଘର ବାହାର ହେଉଅଛି, ବାସୁଭାଇ

ଆସିଲେ କିତାପ ପଢ଼ାଇ ଦେବେ । ବୁଢ଼ୀ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇନାହିଁ, ବେଳ ଛଇଘଡ଼ି ସମୟରେ ବାସୁଯାଇ ପଢ଼ିଇ ଦେଲା, ସ୍ୱରେ—ଅ, ସ୍ୱରେ—ଆ, ହ୍ରସ୍ୱ—ଇ, ଦୀର୍ଘ—ଈ, ହ୍ରସ୍ୱ—ଉ, ଦୀର୍ଘ—ଊ ଇତ୍ୟାଦି । ପ୍ରତିଦିନ ପଢ଼ା ଚାଲିଲା, ପ୍ରତିଦିନ ସନ୍ଧ୍ୟା ସମୟରେ ବାସୁ ଯାଇ ପଢ଼େଇ ଦିଏ । ଦୁଇ ବରଷ ମଧ୍ୟରେ ରେବତୀ ଢେର ପଢ଼ିଗଲାଣି । ମଧୁସୂଦନଙ୍କ ଛନ୍ଦମାଳା ପଢ଼ିଯିବାବେଳେ ମୁହଁରେ ବାଝୁନି ବାଜେ ନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଉଥିବା ବେଳେ ମା—ପୁଅ ଦୁଇଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେହି କଥାର ଉପସଂହାର ।

ଶ୍ୟାମବନ୍ଧୁ—କି ମା, ଭଲ ହେବ ନାହିଁକି ?

ବୁଢ଼ୀ—ହଁ ଭଲତ ହେବ, ଜାତି କଥାଟା ବୁଝିଛୁ ନା ?

ଶ୍ୟାମବନ୍ଧୁ—ମୁଁ ଅଜାଣିଏ ଆଉ କ'ଣ ବୁଝୁଥିଲି ? ଭଲ କରଣ, ଗରିବ ପୁଅ ହେଲେ କଣ ହେବ, ଜାତି ଭଲ ।

ବୁଢ଼ୀ—ଧନ ଦଉଲତ ନାହିଁ ବିଚାର
 ଜାତି କଥାଟା ଆଗେ ପଚାର ।
 ଘରେ ରହିବ ତ ?

ଶ୍ୟାମବନ୍ଧୁ—ଘରେ ନ ରହି ଆଉ କୁଆଡ଼େ ଯିବ ? ହଜାର ହେଲେ ମାମୁଁ ମାଇଁ ବା ଆଉ କଣ ?

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ଅର୍ଥ ସେ କ'ଣ ବୁଝିଲା ସେ ଜାଣେ, ମାତ୍ର ସେହି ଦିନଠାରୁ ତାହାର ଭାବ ଅନ୍ୟରକମ ଦେଖାଯାଉଛି । ବାପା ଆଗରେ ବାସୁଭାଇ ପଢ଼ାଇ ଦେଲେ କାହିଁକି ତାକୁ ଗୋଟାଏ ଲାଜମାଡ଼େ, ଅକାରଣ ସକାରଣ ସବୁବେଳେ ହସମାଡ଼େ, ମୁଣ୍ଡତଳକୁ ପୋତିଦେଇ ଦୁଇଓଠ ଚାପି

ହସ ଲୁଗୁଏ । ଏଣିକି ବାପୁ ପଢ଼େଇ ଦେଲେ କେତେବେଳେ ଭୁଲ ଭୁଲ ପଢ଼େ, କେତେବେଳେ ଖାଲି ହୁଁ ହୁଁ କରେ, ପଢ଼ା ସରିଲେ ପାଟି ବୁଜି ହସି ହସି ଘରକୁ ପଳେଇଯାଏ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡ ଦୁଆର କବାଟକୁ ଧରି କାହାକୁ ଚାହିଁଥାଏ, ବାସୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡାକରେ ବାହାରେ ନାହିଁ । ଏଣିକି ରେବତୀ ଦାଣ୍ଡକୁ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁ ଦେଖୁ ପଞ୍ଚମୀକୁ ପଞ୍ଚମୀ ଦୁଇ ବରଷ ହୋଇ ଗଲାଣି । ବିଧାତାଙ୍କର ବିଧାନ, କାହାର ଦିନ ସମାନ ଭାବରେ ଯିବ ନାହିଁ । ଫଗୁଣମାସିଆ ଦିନ, କାହିଁ କିଛି ନାହିଁ । ଅଗୁନିକ କାହୁଁ ମାଡ଼ି ଆସିଲା—ସକାଳେ ଗ୍ରାମରେ ଶୁଣାଗଲା ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିଙ୍କୁ ବୁଢ଼ୀ ଧରିଅଛି । ମଫସଲ ଗାଁରେ ବାଡ଼ ପଡ଼ିଲେ ତାଟି କବାଟ ପଡ଼ିଯାଏ । ବାଡ଼ ବୁଢ଼ୀ ଯେମନ୍ତ ଝୋଟିଏ କାଖେଇ ଦାଣ୍ଡରେ ମନୁଷ୍ୟ ଗୋଟାଉଛି, ଏହିପରି ସମସ୍ତେ ଜ୍ଞାନ କରନ୍ତି । ଦୁଆରକୁ କାହାରି ଆସିବାର ନାହିଁ । ମାଇକିନିଆ ଦୁଇଟା କଣ କରିବେ ? ଚିଲାଟା ଡକା ପକାଇ ଘର ବାହାର ହେଉଅଛି । ବାସୁଦେବ ଶୁଣି ସ୍କୁଲରୁ ଧାଇଁଲା । ଡରନାହିଁ, ଭୟନାହିଁ, ଆପଣା ଶରୀର ପ୍ରତି ଭାବନା ନାହିଁ, ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲାଉଥାଏ, ପାଣି ଟୋପାଏ ଟୋପାଏ ମୁହଁରେ ଦେଉଥାଏ । ବେଳ ତିନି ପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁ ମୁହକୁ ଚାହିଁ ଖନେଇ ଖନେଇ କହିଲା ବାଁ ସୁଁ—ଏଁ—ବଁଆଁ ଗଁ ଲା, ବାସୁ ଭୋ ଭୋ କରି ଡାକ ମାରିଲା । ଘରେ ଚହଳ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ, ଗ୍ରାମର ଲୋକେ ଶୁଣି କହିଲେ ଗଲା । ଦେଖ—ଦେଖ—ସଞ୍ଜ ବେଳକୁ କିଛି ନାହିଁ । କ'ଣ କରିବେ—ବାସୁଦେବଟା କାଲିକା ପିଲା, ଅଉ ଦୁଇଟା ଭୁଆସୁଣୀ । ଗ୍ରାମର

ବନାସେଠି ଧୋବା ଜଣେ ଜାଣିବା ଶୁଣିବା ଲୋକ, ତା ପାଖରେ ପଚାଶ ଟଙ୍କା ଷାଠିଏ ଟାର କଲଣି । କାଲି ହେଲେ ଯିବାକୁ ହେବ, ଆଜି ହେଲେ ଯିବାକୁ ହେବ । ଲୁଗାପଟା ଦକ୍ଷିଣା ମଧ୍ୟ ମିଳିବାର ଭରସା । ଗାମୁଛାଟାଏ ଅଣ୍ଟାରେ ଭିଡ଼ିଦେଇ କୁରାଢ଼ୀଟାଏ କାନ୍ଧରେ ପକାଇ ହାଜର ହୋଇଗଲା । ଗ୍ରାମରେ କରଣ ସେହି ଘରକ, ଶାଗୁ, ବୋହୂ, ବାସୁଦେବ ତିନିଜଣ ଧରା ଧରି କରି କର୍ମ ଚଳାଇଲେ । ସେ ସମୟର କଥା ଗୁଡ଼ାକ ଲେଖିବାକୁ ଆମେ ନିତାନ୍ତ ଅକ୍ଷମ । ଶ୍ମଶାନରୁ ଫେରି ଆସିବାକୁ କୁଆ ତାରା ଉଇଁଲଣି । ଘରେ ପଶିବା ମାତ୍ରକେ ରେବତୀ ମା ଚୋଟକ୍ଷ୍ମପାଣି ଟଳି, ଦେଖ ଦେଖ ଦିନ ଦ୍ୱିପ୍ରହର ବେଳେ ଗ୍ରାମରେ ହାଟହେଲା ରେବତୀ ମା ନାହିଁ ।

ଦିନ ଚାଲିଯାଏ, କାହାର ଲାଗି ଦିନ ବସି ରହେନାହିଁ । କାହାର ପାଲିକି ଉପରେ ପାଟଛତା, କାହାର ବେଢ଼ି ଉପରେ କୋରଡ଼ା । ମାତ୍ର ଦିନ ଯାଉଅଛି ସମସ୍ତଙ୍କର । ଦେଖୁ ଦେଖୁ ତିନିମାସ କଟି ଗଲାଣି, ଶ୍ୟାମବନ୍ଧୁ ଘରେ ଦୁଇଟି ଗାଈଥିଲେ, ତହିବାଲି ବାକୀ ଟଙ୍କା ସକାଶେ ଜମିଦାର ଘର ଲୋକେ ଆସି ବାନ୍ଧି ଘେନି ଗଲେ । ଆମ୍ଭେମାନେ ଜାଣୁ ଜମିଦାର ଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବନିର୍ମାଲ୍ୟ ପରି ଜ୍ଞାନକରେ, ଟଙ୍କାଟିଏ ଅସୁଲ ହେଲେ ଜମିଦାର କଚେରୀରେ ପୈଠ ନ କରିବା ଯାଏ ତାହାର ନିଦ ଥାଏ ନାହିଁ । ମାତ୍ର ତାହା ଉପରେ ଟଙ୍କା ଅଛି ବା ନ ଥାଉ, ଗାଈ ଦିଓଟି ବଡ଼ ଦୁଧିଆଳି ଏକଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ଏହାଛଡ଼ା ଜମିଦାର ଚଷିବାକୁ ଯେ ତିନିମାଣ ଜମି ଦେଇଥିଲେ, ତାହା ଛଡ଼େଇ ନେଲେଣି, ହଳଅଟା ବା ଘରେ ଆଉ କିଆଁ ରହିବ ? ଦୋଳ-ପୂର୍ଣ୍ଣିମା ଦିନ ସେ ଗୁଡ଼ିଗଲା । ବଳଦ ଦୁଇଟା ଯାଢ଼େ ସତର ଟଙ୍କାରେ ବିକା ଯାଇଥିଲା, ଦୁଇଜଣଙ୍କ କିସ୍ତାରେ ଖରଚଯାଇ ଯାହା ବଳିଥିଲା

ଏଣ୍ଟାବିଣ୍ଟା କରି ମାସେ ଚଳିଲା, ଅଳ୍ପ ଡାଲଟା କାଲି ପିତଳଟା ବନ୍ଧିବନ୍ଧା ବନ୍ଧାଛନ୍ଦାରେ ଆଉ ମାସେ ଗଲା । ବାସୁ ଦୁଇଓଳି ଦୁଆରକୁ ଆସେ, ଯେତେ ଘଡ଼ିଏ ଯାଏ ଥାଏ, ଆଈ ନାତୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାସୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାତୁଣୀ କେହି ନିଅନ୍ତି ନାହିଁ । ବଳେଇ ବଳେଇ କିଛି ଦେଲେ ତାହା ଠଣାରେ ପଡ଼ିଥାଏ, ବାସୁ ଜାଣିପାରି ଆଉ କିଛି ଦିଏନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦୁଇଟା ପଇସା ନେଇ ସଉଦା କିଣିଦିଏ, ସେହି ଦୁଇପଇସାର ସଉଦାରେ ଆଠ ଦଶଦିନ ଚଳିଯାଏ । ଘରର ଚାଳ ଉଜ ଗଲଣି, ଛାଉଣି ଦରକାର, ବାସୁ ଦୁଇ ଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇଅଛି, ଶରଣ ହେବାରୁ ଛପରବନ୍ଦ ହୋଇ ପାରିନାହିଁ । ବୁଢ଼ୀ ଏବେ ଆଉ ଦିନରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜହେଲେ ବସି କାନ୍ଦେ । କାନ୍ଦି କାନ୍ଦି ତଳେ ପଡ଼ିଯାଏ, ସେହିଠାରେ ରାତିକାଟେ, ରେବତୀ ଥକେଇ ଥକେଇ ପାଖରେ ପଡ଼ିଯାଏ । ବୁଢ଼ୀ ଆଖିକୁ ଏବେ ଭଲ ହୋଇ ଦିଶୁନାହିଁ, ବାମ୍ଭୁଣୀ ପରି ହୋଇ ଗଲାଣି, ଏବେ ସେ କାନ୍ଦିବାର ଊଣାକରି ରେବତୀକୁ ଗାଳି ଦେବାର ଆରମ୍ଭ କରିଅଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା, ସବୁରି ମୂଳ କାରଣ ରେବତୀ, ଏହା ସେ ମନ ମଧ୍ୟରେ ସ୍ଥିର ସିଦ୍ଧାନ୍ତ କରି ସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈବାଛି ଘେନିଗଲା ! ରେବତୀ କୁଳଘଣୀ, ରେବତୀ କାଳାଙ୍ଗୀ, ରେବତୀ ଲକ୍ଷ୍ମୀଛାଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳି ଦେବାବେଳେ ରେବତୀର ଆଖିରୁ ଦୁଇଧାର ଲୋହ ଯାଉଥାଏ । ଡରରେ ବୁଢ଼ୀ ପାଖରେ ଛିଡ଼ା ହୋଇ ପାରେନାହିଁ । ବାଡ଼ୀ ଦୁଆରେ ନୋହିଲେ ଘର କୋଣରେ ମୁହଁ ଘୋଡ଼ାଇ କାଠପରି ବସିଥାଏ । ବାସୁମଧ୍ୟ

ଦୋଷୀ, କାରଣ ରେବତୀ ତ ଏତେ ଦିନଯାଏ ପଢ଼ୁ ନ ଥିଲା, ସେହି ଆସି ସିନା ପଢ଼ାଇ ଦେଲା । ମାତ୍ର ବୁଢ଼ୀ ବାସୁକୁ କିଛି କହିପାରେ ନାହିଁ । ବାସୁ ନ ହେଲେ ଘର ଦଣ୍ଡେ ଅଚଳ, ପୁଣି ଜମିଦାର ଘର ଲାଠ ଛାଡ଼ୁନାହିଁ । ଜମିଦାର ଲୋକ ଆସି ଆଜି ଏ ହିସାବଟା, କାଲି ସେ ହିସାବଟା ମାଗେ, ବାସୁ ନ ହେଲେ ଧାଙ୍ଗି ବଡ଼ରୁ ପଟି ପତର କାଟିଦେବ କିଏ ? ତଥାପି ବାସୁ ନ ଥିବାବେଳେ ସେ ସହଜ କଥାରେ କେବେ କେବେ ମନ୍ତବ୍ୟ ପ୍ରକାଶ କରିଥାଏ । ରେବତୀ ଆଉ ଏଣିକି ପିଲାନୁହେଁ, ତାହା ପାଟି ଆଉ କେହି ଶୁଣିନାହିଁ, ବାପ ମା ଗଲାଦିନୁ ତାକୁ ଆଉ ଦାଣ୍ଡ ଦୁଆରେ କେହି ଦେଖିନାହିଁ । କେତେଦିନ ଯାଏ ଭୋ ଭୋ କରି ଡାକ ପାଡ଼ୁଥିଲା, ଏବେ ଆଉ ପାଟିକରି କାନ୍ଦେନାହିଁ, ମାତ୍ର ଦିବାରାତ୍ର ଆଉ ଆଖିରୁ ପାଣି ଶୁଖିବାକୁ ନାହିଁ । ତାହାର କ୍ଷୁଦ୍ର ପ୍ରାଣ—ତହିଁରୁ ଅତି କ୍ଷୁଦ୍ର ମନଟି ଏକାବେଳକେ ଭାଙ୍ଗି ଯାଇଅଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ସୂର୍ଯ୍ୟରେ ଆଲୁଅ ନାହିଁ, ରାତିରେ ଅନ୍ଧାର ନାହିଁ, ସମସ୍ତ ଜଗତ ଶୂନ୍ୟ । କେବଳ ପିତାମାତାଙ୍କ ସ୍ମୃତି ହୃଦୟ ପୂର୍ଣ୍ଣ କରିଅଛି । ମା ଏହିଠାରେ ବସି ଅଛନ୍ତି, ବାପା ଗୁଳିଖାଉଅଛନ୍ତି, ତାହା ଆଖି ଆଗରେ କେବଳ ଏହି ଦୁଇଟା ଦିଶୁଅଛି । ବାପ ମା ମରି ଯାଇଅଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏକଥା ସେ ବିଶ୍ୱାସ କରି ପାରୁନାହିଁ । ପେଟରେ ଭୋକନାହିଁ, ଆଖିରେ ନିଦନାହିଁ, ଦିବାନିଶି ଅନୁକ୍ଷଣ ପିତାମାତା ଧ୍ୟାନ । ଜେଜାମା ଡରରେ ଖାଇବାକୁ ବସେ । ଭୂଇଁରୁ ପ୍ରାୟ ଉଠେନାହିଁ । ଦେହରେ ହାଡ ଚମ ଦୁଇଖଣ୍ଡ ଅଛି, କେବଳ ବାସୁଦେବ ଘରକୁ ଆସିଲେ ଉଠିବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳ ଜଳ କରି ବାସୁକୁ ଚାହିଁଥାଏ, ବାସୁ ଅନାଇଲେ ସାନ ନିଶ୍ୱାସଟାଏ ପକାଇ ମୁଣ୍ଡ ପୋତି ଦିଏ । ବାସୁ ପାଖରେ ଥିବାଯାଏ ତାହାକୁ ଚାହିଁ ରହିଥାଏ । କେତେବେଳେ ତାହାର ଅଜ୍କାଷ୍ଟ କ୍ଳାନ୍ତ

ନ ଥାଏ—ଆଖିରେ ବାସୁଦେବ, ସମସ୍ତ ହୃଦୟଟା ବାସୁଦେବ-ମୟ । ଶ୍ୟାମବନ୍ଧୁ ମରିବାର ଆଜକୁ ହାତ ଗଣତିରେ ପାଞ୍ଚମାସ, ଜ୍ୟେଷ୍ଠମାସିଆ ଦିନ, ଠିକ୍ ଦିନ ଦୁଇ ପ୍ରହରବେଳେ ବାସୁ ଦୁଆରେ ଡାକିଲା । ଏତେବେଳେ ସେ କୌଣସି ଦିନ ଆସେ ନାହିଁ, ବୁଢ଼ୀ କୁନ୍ଥେଇ କୁନ୍ଥେଇ ଯାଇ ଦୁଆର ଫିଟାଇ ଦେଲା । ବାସୁ କହିଲା—ଜେଜୀମା ( ବାସୁ ବୁଢ଼ୀକୁ ଜେଜୀମା ବୋଲି ବରାବର ଡାକେ ) ଡିପୋଟି ଇନ୍ସପେକ୍ଟରେ ହରିହରପୁର ଥାନାରେ ବସି ପାଠଶାଳାର ପିଲାମାନଙ୍କ ପାଠ ପଚାରିବେ, ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଛଅଟି ଆସିଅଛନ୍ତି, ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ । ରେବତୀ କବାଟ କଡ଼ରେ ଛିଡ଼ା ହୋଇ ଶୁଣୁଥିଲା, ଲଟ୍‌କାଇ ବସି ପଡ଼ିଲା, ଭାଗ୍ୟେ କବାଟ ଧରିଥିଲା, ନଚେତ୍ ବୋଧହୁଏ ପଡ଼ି ଯାଇଥାଆନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ ଲୁଣ ତେଲ ବାଇଗଣ କଖାରୁ ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁ ସଞ୍ଜବେଳେ ବାହାରିଲା । ବୁଢ଼ୀ କହିଲା, ବାପା ଖରାରେ ବୁଲିବୁ ନାହିଁ, ଦେହପାକୁ ଚାହିଁବୁ, ବେଳରେ ଦିଟା ମୁହଁରେ ଦେବୁ, ଏହାକହି ନିଶ୍ୱାସଟାଏ ପକାଇଲା । ରେବତୀ ଏକ ଧ୍ୟାନରେ ବାସୁକୁ ଚାହିଁଥାଏ, ଆଜିକା ଚାହାଣି ଅନ୍ୟପ୍ରକାର । ଆଗେ ବାସୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିଲା, ଆଜି ସେ ଭାବନାହିଁ, ଏକ ଧ୍ୟାନରେ ବାସୁକୁ ଚାହିଁ ରହିଅଛି । ବାସୁର ମଧ୍ୟ ଆଜି ଆଗକା ଚାହାଣୀ ନୁହେଁ । ଆଗେ ବାସୁର ଯେମନ୍ତ ଖୁବ୍ ଇଚ୍ଛା ରେବତୀକୁ ଭଲକରି ଦେଖିବ, କିନ୍ତୁ ଅନାଇ ପାରେ ନାହିଁ । ଆଜି ଚାରି ଚକ୍ଷୁର ମିଳନ, ଆଖି ଫେରାଇବାକୁ କାହାର ଆସ୍ପୃହା ନାହିଁ । ବାସୁ ଚାଲି ଗଲାଣି, ଆଉ ଦିନନାହିଁ, ଘର ବାହାର ଅନ୍ଧାର ପୂରି ଗଲାଣି, ରେବତୀ ଯେପରି ଚାହିଁଥିଲା ସେହିପରି

ଶୁହିଁଅଛି । ବୁଢ଼ୀ ଡାକିବାରୁ ତାହାର ଚେତନା ହେଲା, ଘର ବାହାର ସମସ୍ତ ଅନ୍ଧକାରମୟ ।

ରେବତୀ ବସି ଦିନ ଗଣୁଅଛି, ଆଜି ଛଦିନ । ବାପା ମା ଗଲଦିନୁ ଦାଣ୍ଡ ଦୁଆର ଦେଖି ନ ଥିଲା, ଆଜି ସକାଳୁ ଦାଣ୍ଡଦୁଆରେ ଦୁଇଥର ମୁହଁମାରି ଗଲଣି । ଗଲ ଅଧାଜା ଛ ଘଡ଼ି, ହରିହର ପୁରରୁ ସ୍କୁଲ ପିଲମାନେ ଫେରି ଆସିବାମାନେ ଗାଁ ଲୋକେ ବୋଲା ବୋଲି ହେଲେ—ହରିହର ପୁରରୁ ଫେରି ଆସିବା ସମୟରେ ଗୋପାଳ ପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଘ ଧିଇଲା, ଖୁବଥର ପୋଖରୀପାଣି ହେଲା, ଅଧବାଟ ବେଳେ ଶୁଲିଗଲେ । ଗ୍ରାମ ଲୋକମାନେ ହାୟ ହାୟ କଲେ, ପୁଅ ଝିଅ ମା ମାଇକିନିଆମାନେ ପାଟିକରି କାନ୍ଦ ପକାଇଲେ—କେହି କହିଲା ଆହା କି ରୂପରେ, କେହି କହିଲା—କି ଧୀରରେ, କେହି କହିଲା—ଦାଣ୍ଡରେ ଶୁଲି ଯାଉଥିବ ଯେ ମାଛିଟିକୁ ମରି କହିବନାହିଁ ।

ରେବତୀ ଶୁଣିଲା—ବୁଢ଼ୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠରୁଦ୍ଧ ହୋଇଗଲା । ଅଉକାନ୍ଦି ପାରିଲା ନାହିଁ, ଶେଷକୁ ଆହା ବାପ, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରାଇଲୁରେ । ଅର୍ଥାତ୍ ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼ାଇବାରୁ ସେ ମରିଗଲା, ନଚେତ୍ କେବେ ମରି ନ ଥାନ୍ତା ! ଶୁଣିଲାବେଳୁ ରେବତୀ ଘରେ ଯାଇ ପଡ଼ିଅଛି—ସୋର ଶବ୍ଦନାହିଁ । ସେ ଦିନଟା ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟିକରି ଡାକିଲା, ଲୋ ରେବତୀ, ଲୋ ରେବା, ଲୋ ନାଁ, ଲୋ ଚୁଲୀ । ବୁଢ଼ୀ ବାୟାଣୀପରି ହୋଇ ଗଲାଣି, କାନ୍ଦ ବୋବାଳି ନାହିଁ, କେବଳ ଘରେ ଦିନରାତି ରେବତୀକୁ ଡାକେ । ପଡ଼ିଶାଲୋକେ, ଦାଣ୍ଡ ଗଲାଲୋକେ ଯେତେବେଳ ଗଲେ ସେତେବେଳେ ଶୁଣୁଅଛନ୍ତି, "ଲୋ ରେବତୀ, ଲୋ ରେବା, ଲୋ ନାଁ, ଲୋ

ଚୁଲା ! ” ବୁଢ଼ୀ ଆଖିକୁ ଦିଶୁନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା, ଡାକିଲା, ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା, ଭିରଜ୍ୱର, ଦେହରୁ ନିଆଁ ବାହାରୁଅଛି, ଜ୍ଞାନନାହିଁ । ବୁଢ଼ୀ ହେଉ ଚାଳିଯାଏ ଦିଶ କ’ଣ ପାଇଲା । କଣ କରିବ, କାହାକୁ ଡାକିବ, ମନ ମଧ୍ୟରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିରକରି ନ ପାରି ଖପା ହୋଇ କହିଲା “ଯାହା ଅପଣାଦାଅ, ତାହାଁକ ଇଲାଜ୍ କିଅ” ଅର୍ଥାତ୍ ତୁ ପାଠ ପଢ଼ିବାରୁ ଜ୍ୱରହେଲା, ମୁଁ କ’ଣ କରିବି ?

ଦିନେଗଲା, ଦୁଇଦିନଗଲା; ତିନିଦିନଗଲା, ଚାରିଦିନଗଲା, ପାଞ୍ଚଦିନ ମଧ୍ୟ ଗଲା । ରେବତୀ ମାଟିରେ ଲାଗିଯାଇ ପଡ଼ିଅଛି, ଆଖି ଫିଟାଉ ନାହିଁ, ଡ଼ାକିଲେ ଉତ୍ତର ନାହିଁ, ଓଁ ଚୁଁ ହେବାକୁ ମଧ୍ୟ ନାହିଁ । ଆଜ ଛଦିନ, ରେବତୀ ସକାଳୁ ଦୁଇ ଚାରିଥର ପାଟି କଲାଣି, ବୁଢ଼ୀ ପାଟିଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା ଗୋଡ଼ ହାତ ଶୀତଳ; ଡ଼ାକିଲେ ହୁଁ ହୁଁ ଜବାବ ଦେଲା । କଅଁମଅଁ କରି ମୁହଁକୁ ଚାହୁଁଅଛି, କିଛି ନ ପଚାରିଲେ ମଧ୍ୟ କେତେ କଥାକହି ପକାଉଅଛି । କୌଣସି କବିରାଜ ଦେଖିଲେ ‘ତୃଷ୍ଣାଦାହଃ ପ୍ରଲାପଶ୍ଚ’ ଇତ୍ୟାଦି ଶ୍ଳୋକପଢି କହନ୍ତେ “ସନ୍ନିପାତସ୍ୟ ଲକ୍ଷଣଂ ।” ମାତ୍ର ବୁଢ଼ୀ କିଛି ବୁଝିହେଲା, ଦେହରେ ତାତନାହିଁ, କଥା କହୁ ନଥିଲା, ମାଟି ଫିଟାଇଲାଣି, ଚାହୁଁ ନ ଥିଲା, ଆଖି ଫିଟିଲାଣି, ପାଣି ପିଇବାକୁ ମାଗିଲଣି, ଛଦିନ ହେଲା, ଜିଭରେ ପାଣି ଟୋପାଏ ବାଜିନାହିଁ, ଚାରିଟା ପଥି ପେଟରେ ପଡ଼ିଲେ ଝିଅଟା ଉଠିବସିବ । ତୁ ଶୋଇ ଥା, ମୁଁ ଚାରିଟା ପଥି ରାନ୍ଧିଆଣେ; ଏହାକହି ବୁଢ଼ୀ ବାହାରକୁ ବାହାରି ଆସିଲା । ପଥି ରାନ୍ଧିବ କଣ ? ଘରେ ପାଛିଆ କୁଣ୍ଡେଇ, ହାଣ୍ଡି ଅଟିକା, ସବୁ ଖୋଜିଲା, ମୁଠାଏ ଚାଉଳ ନାହିଁ । ନିଶ୍ୱାସଟାଏ ପକେଇ ଘଡ଼ିଏ ବସିଲା, ବାମ୍ଭୁ ପାଞ୍ଚଦିନକୁ ଚାଉଳ ଡାଲି

କଣି ଦେଇ ଯାଇଥିଲା, ସେଥିରେ ଦଶଦିନ କାଆଁ ଚଳିଗଲା, ବୁଢ଼ୀର ଦୃଷ୍ଟିଶକ୍ତି ଥିଲେ ବୁଝି ପାରି ଥାଆନ୍ତା । ବସି ବିଚାର କଲେ ବୁଦ୍ଧି ଦିଶେ । ଘରେ କଂସାବାସନ କାଣ୍ଡୁନାହିଁ, ହାତରେ ଗୋଟାଏ କଣା ଡ଼ାଲ ପଡ଼ିଲା, ସେଇଟା ଧରି ହରିସା ଦୋକାନକୁ ବାହାରିଲା । ହରିସାଘର ଗ୍ରାମ ମଝିରେ, ତାହାର ସ୍ୱତନ୍ତ୍ର ଦୋକାନ ନାହିଁ, ଗୁଡ଼ଲ ଡାଲି ଲୁଣ ତେଲ ରଖିଥାଏ, କୌଣସି ଦିନ ବିଦେଶୀ ଲୋକ ପହଞ୍ଚିଗଲେ କିଣନ୍ତି—କେବେ ହେଲେ ଗ୍ରାମ ଲୋକଙ୍କର କାଣ୍ଡୁ ଦରକାର ହେଲେ କିଣନ୍ତି । ବୁଢ଼ୀ ଡ଼ାଲଟି ଧରି ହରିସା ଦୁଆରେ ପହଞ୍ଚିଲା । ହରିସା ବୁଢ଼ୀ ହାତରେ ଡ଼ାଲଟା ଦେଖି ଅର୍ଥଟା ବେଶ୍ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ଡ଼ାଲଟା ହାତରେ ଧରି ଗୃହପାଖ ଦେଖି କହିଲା, ନାହିଁ ନାହିଁ, ମୋ ଘରେ ଗୁଡ଼ଲ ନାହିଁ ; ଆଉ ଏହି କଣା ଡ଼ାଲଟା ରଖି କିଏ ଗୁଡ଼ଲ ଦେବ ? ହରି ଘରେ ଯେ ଗୁଡ଼ଲ ନ ଥିଲା ତାହା ନୁହେଁ । ଦେବାକୁ ମଧ୍ୟ ଇଚ୍ଛା, ତେବେ ସସ୍ତାରେ ନେବାର କଥା । ଗୁଡ଼ଲ ନ ଥିବାର ଶୁଣି ବୁଢ଼ୀର ମୁଣ୍ଡରେ କି ବଜ୍ର ପଡ଼ିଲା । କ'ଣ କରିବ, ଝିଅଟା ଜ୍ୱରରୁ ଉଠିଛି, ତା ମୁହଁରେ କଣ ଦେବ ? ଘଡ଼ିଏ ବସିଗଲା, ବେଳବୁଡ଼ି ଆସିଲାଣି । ଯାଏଁ ଝିଅଟାକଣ କରୁଛି ଦେଖେଁ, ଡ଼ାଲଟିଧରି ଉଠୁଛି, ହରି କହିଲା, ଦିଅ ଦିଅ ଡ଼ାଲଟା ଦିଅ, ଦେଖେ କଣ ଅଛି । ହରି ଡ଼ାଲଟାରଖି ଚାରିମାଣ ଚାଉଳ, ଅଧ ମାଣେ ଡାଲି, କିଛି ଲୁଣ ଦେଲା, ବୁଢ଼ୀ ଚାରି ଛ ଜାଗାରେ ବସି ଉଠି ଘରେ ଆସି ପହଞ୍ଚିଲା । ଏ ପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତକାଠି ବାଜିନାହିଁ, ଦେହ ମନର କଷ୍ଟକଥା କ'ଣ କହିବୁଁ ? ଘରେ ପହଞ୍ଚି ରେବତୀକୁ ଡ଼ାକିଲା, ତାହାର ବିଶ୍ୱାସ ରେବତୀ ଭଲ ହୋଇ ଚାଲିଲାଣି, ପାଣି କାଢ଼ିଦେବ, ସେ ଭାତ ରାନ୍ଧିବ । ରେବତୀ

ଜବାବ ନ ଦେବାରୁ ସେ ଭାରି ଖପା ହୋଇ ଯାଇ ଡାକିଲା, ଲୋ ରେବତୀ, ଲୋ ରେବୀ, ଲୋ ନିଆଁ, ଲୋ ଚୁଲୀ ! ଜବାବ ନାହିଁ ।

ଏଣେ ରେବତୀର ସନ୍ନିପାତ ରୋଗ କ୍ରମଶଃ ବଢ଼ୁଅଛି, ଭୟାନକ ଯନ୍ତ୍ରଣା, ଦେହରୁ ନିଆଁ ବାହାରୁଅଛି, ଜିଭ ଶୁଖି ଗଲାଣି, ଭୟଙ୍କର ପିପାସା, ଛାତିଟା ଯେମନ୍ତ ଭିତରକୁ ଟାଣି ଯାଉଅଛି । ଥଣ୍ଡା ଜାଗାକୁ ଯିବାର ଇଚ୍ଛା, ଘରଯାକ ଗଡ଼ି ଗଡ଼ି ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ି ଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନଶେଷ ହୋଇ ଆସିଲାଣି, ଖୁବ୍ ପବନ ବହୁଅଛି, ବାଡ଼କୁ ଆଉଜି ବସିଲା । ବାଡ଼ଯାକ ଅନାଇଲା, ଏହି ବାପା ଗଲା ବରଷ କଦଳୀ ଲଗାଇ ଥିଲେ, ଭଣ୍ଡା ବାହାରିଲାଣି, ଦୁଇବରଷ ତଳେ ମା ଗୋଟିଏ ପିଜୁଳିଗଛ ବାଡ଼ରେ ରୋଇଥିଲେ, ରେବତୀ ଧାଇଁ ଧାଇଁ କୂଅରୁ ଢାଳେ ପାଣିନେଇ ସେ ଗଛରେ ଦେଇଥିଲା, ସେ ଗଛ କେଡ଼େଟିଏ ହେଲାଣି, ଫଳ ଧରିଲାଣି । ସେ ଗଛ ଦେଖି ମା ମନରେ ପଡ଼ିଲେ, ବୁଦ୍ଧି ସ୍ଥିରନାହିଁ । ମନ ଚଞ୍ଚଳ, ଲଗାଲଗି କିଛି କଥା ମନରେ ପଡ଼ୁନାହିଁ ; ମାନ ମାତାର ଆନନ୍ଦମୟୀ ମୂର୍ତ୍ତି ଆଉ ମନକୁ ଛାଡ଼ୁନାହିଁ । ସଞ୍ଜ ଗଡ଼ି ଗଲାଣି, ଗଛମୂଳରୁ ଡାଳ ଉହାଡ଼ରୁ ଅନ୍ଧକାର ଗୁଡ଼ାକ ବାହାରି ବାଡ଼ି ପୂରିଗଲାଣି, ଆଉ କିଛି ଦିଶୁନାହିଁ, ଆକାଶକୁ ଚାହିଁଲା, ପହରଦିଆ ତାରାଟିରୁ ଧକ ଧକ ହୋଇ କିରଣ ବାହାରୁଅଛି । ଏକ ଧ୍ୟାନରେ ରେବତୀ ସେହି ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡ଼ୁନାହିଁ, ତାରାର ଆକାର କ୍ରମଶଃ ବଢ଼ି ଯାଉଅଛି, ଚନ୍ଦ୍ରର ଆକାର ହୋଇ ଗଲାଣି, ଆହୁରି ବୃଦ୍ଧି, କ୍ରମଶଃ ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା ! ଏ କି ମୂର୍ତ୍ତି ତାହାମଧ୍ୟରେ ? ଶାନ୍ତ ଦୀପ୍ତିମା ପ୍ରେମମୟୀ ଆନନ୍ଦମୟୀ ମାତାଙ୍କର ଅଭୟା ମୂର୍ତ୍ତି ବସି

ସ୍ନେହରେ କୋଳକୁ ନେବା ପାଇଁ ଡାକୁ ଅଛନ୍ତି । ମା ଦୁଇଟୋଟି କରୁଣ ହସ୍ତ ବଢ଼ାଇ ଦେଲେ, ସେହି କରୁଣ ଧାରଟି ଅସି ଦୁଇଚକ୍ଷୁ ମୂର୍ଚ୍ଛାକର ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ, କେବଳ ନିଶ୍ୱାସ ଶବ୍ଦ, ସେ ଶବ୍ଦ କ୍ରମଶଃ ପ୍ରବଳ—ଖୁବ୍ ଦୀର୍ଘଶ୍ୱାସ—ଶେଷରେ ମା—ମା—ଦୁଇଥର ଅସ୍ପଷ୍ଟ ଶବ୍ଦ ଶୁଭିଲା । ବାଡ଼ି ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଧୁପୁରୁ ଧୁପୁରୁ ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହିନାହିଁ, ଘରଯାକ, ବାହାରେ ଅଗଣା, ଢେଙ୍କିତଳ, ଢେଙ୍କି ଲଞ୍ଜି, କାହିଁ ନାହିଁ, ମନେହେଲା ଜ୍ୱର ଭଲ ହୋଇଗଲାଣି, ବାଡ଼ରେ ବୁଲୁଅଛି । ସେହିଡ଼ାକ—ଲୋ ରେବତୀ, ଲୋ ରେବୀ, ଲୋ ନିଅଁ, ଲୋ ଚୁଲୀ ? ବାଡ଼ି ଦୁଆରକୁ ଗଲା, ଅଣ୍ଡାଳି ଅଣ୍ଡାଳି ପିଣ୍ଡାକୁ ଉଠିଲା, ପିଣ୍ଡାଠା ଭୂମିଠାରୁ ଦୁଇହାତ ଉଚ୍ଚ, ହାତେଡେଉଡ଼ା ।

ମଲା, ତୁ ଏଇଠି ବସିଛୁ ? ଦେହରେ ହାତଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା, ଆଉଥରେ ଭଲକରି ଗୋଡ଼ଠାରୁ ମୁଣ୍ଡଯାଏ ହାତ ବୁଲାଇଲା, ନାକରେ ହାତଦେଇ ଗୋଟାଏ ଉକ୍‌ଟ ଦେଲା, ସଙ୍ଗେ ସଙ୍ଗେ ପିଣ୍ଡାତଳେ ଦୁଲ୍ ଦାଲ୍ ଶବ୍ଦ—

ଶ୍ୟାମବନ୍ଧୁ ମହାନ୍ତିଙ୍କ ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି, ପଡ଼ୋଶିମାନେ ରାତ୍ରିପହରକ ସମୟରେ ଶେଷ ଶବ୍ଦ ଶୁଣିଥିଲେ—

"ଲୋ ରେବତୀ, ଲୋ ରେବୀ, ଲୋ ନିଅଁ, ଲୋ ଚୁଲୀ ।"



( ଉତ୍କଳ ସାହିତ୍ୟ, ୨ୟ ବର୍ଷ ୧୦ମ ସଂଖ୍ୟା, କାର୍ତ୍ତିକ ୧୩୦୬—
ଅକ୍ଟୋବର ୧୮୯୮ରେ ପ୍ରକାଶିତ )

ଦୟାନିଧି ମିଶ୍ର

# ଅରୁଣା

## ପ୍ରଥମ ପରିଚ୍ଛେଦ

"କଥଂ ନିଗଡ଼—ସଂଯତାଽସି । ଦ୍ରୁତଂ
ନୟାମି ଭବନ୍ତମିତଃ—" (ରତ୍ନାବଳୀ)

ପ୍ରାୟ ଅଢ଼ାଇଶ ବର୍ଷ ପୂର୍ବେ ସମ୍ବଲପୁର ଦୁର୍ଗର ଉତ୍ତର-ପଶ୍ଚିମ ସୀମାନ୍ତବର୍ତ୍ତୀ ଝିଙ୍ଘୋର୍ ଗିରିସଙ୍କଟ ନିକଟରେ ଜଣେ ଅଶ୍ୱାରୋହୀ ସତର୍କ ଭାବରେ ଚତୁର୍ଦ୍ଦିଗ ନିରୀକ୍ଷଣ କରି ଅଶ୍ୱ ଚାଳନା କରୁଥିଲେ । ଅଶ୍ୱାରୋହୀଙ୍କ ବୟସ ୩୫ ବର୍ଷ ହେବ । ତାଙ୍କ ସର୍ବାଙ୍ଗ ଲୌହବର୍ମ୍ମା-ଚ୍ଛାଦିତ; ମସ୍ତକରେ ହୀରକ-ଖଚିତ ଉଷ୍ଣୀଷ, ମୁଖ ବୀରତ୍ୱ-ବ୍ୟଞ୍ଜକ ଓ ଉତ୍ସାହପୂର୍ଣ୍ଣ; ଶରୀର ସୌଷ୍ଠବାନ୍ୱିତ ଓ ପୂର୍ଣ୍ଣାୟତନ, ଅଶ୍ୱାରୋହୀ ଗିରିସଙ୍କଟ ନିକଟକୁ ଯାଇ କିଛିକ୍ଷଣ ଅଶ୍ୱର ଗତିରୋଧ କଲେ ଏବଂ ମନ ମଧ୍ୟରେ କଣ ଭାବି ଥରେ ଚାରିଆଡ଼କୁ ଅନାଇଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତ ପ୍ରାୟ । ଅସ୍ତାଚଳ-ଗମନୋନ୍ମୁଖ ସୂର୍ଯ୍ୟଦେବ ସ୍ୱର୍ଣ୍ଣ କିରଣରେ ପର୍ବତ ଗାତ୍ରକୁ ରସାଣି ବୃକ୍ଷ-ଲତା-ପରିଶୋଭିତ ଭୂଧରକୁ ଅପୂର୍ବ ଶୋଭାରେ ବିଭୂଷିତ କରୁଅଛନ୍ତି । ସନ୍ଧ୍ୟାଗମ ଦେଖି ପକ୍ଷୀମାନେ ସ୍ୱ ସ୍ୱ କୁଳାୟ-ଅଭିମୁଖେ ପ୍ରତ୍ୟାବୃତ୍ତ ହେଉଅଛନ୍ତି । ମୃଗମାନେ ଚଞ୍ଚଳ ପଦ ବିକ୍ଷେପରେ ଅରଣ୍ୟରେ ମର୍ମ୍ମର ଶବ୍ଦ ସୃଷ୍ଟି କରି ଭୟାକୁଳ ଚିତ୍ତରେ ବିଚରଣ କରୁଅଛନ୍ତି ।

ଅଶ୍ୱାରୋହୀ ଅଶ୍ୱ-ପୃଷ୍ଠରେ ଆରୂଢ଼ ହୋଇ କିଛିକ୍ଷଣ ପ୍ରକୃତିର ମାୟାମୟୀ ଲୀଳା ଦେଖିବାକୁ ଲାଗିଲେ । ପରେ ଅରଣ୍ୟକୁ ଲକ୍ଷ୍ୟ କରି ଶଙ୍ଖଧ୍ୱନି କଲେ, ଶଙ୍ଖଧ୍ୱନି ହେବା ମାତ୍ରକେ ଅରଣ୍ୟ ମଧ୍ୟରୁ ବହୁ-ସଂଖ୍ୟକ ଅଶ୍ୱାରୋହୀ ଓ ପଦାତିକ ନିର୍ଗତ ହେଲେ ଏବଂ ସତୃଷ୍ଣ ନୟନରେ ଉପରୋକ୍ତ ଅଶ୍ୱାରୋହୀଙ୍କ ଆଡ଼େ ଅନାଇବାକୁ ଲାଗିଲେ । ଅଶ୍ୱାରୋହୀ ନୀରବରେ ଅଗ୍ରସର ହେଲେ । ତାଙ୍କ ମୁଖ ଅଧୁନା ଗମ୍ଭୀର; ମନ ଚିନ୍ତାକୁଳ, ନବାଗତ ସୈନିକମାନେ ତାହାଙ୍କର ଅନୁସରଣ କରିବାକୁ ଲାଗିଲେ, ସେମାନଙ୍କ ପଛେ ପଛେ ଭାରବାହୀ ଗର୍ଦ୍ଦଭ ଏବଂ ମହିଳାମାନେ ରକ୍ଷି-ପରିବେଷ୍ଟିତ ହୋଇ ଯିବାକୁ ଲାଗିଲେ । କିଛିଦୂର ଗଲାପରେ ଅଶ୍ୱାରୋହୀ ପୁଣି ଅଶ୍ୱର ଗତିରୋଧ କଲେ । ସେତେବେଳକୁ ସୂର୍ଯ୍ୟାସ୍ତ ହୋଇ ସାରିଲାଣି । ନିଶା ଆଗମନ ଦେଖି ଅଶ୍ୱାରୋହୀଙ୍କ ମନ ଅଧିକ ଚିନ୍ତାକୁଳ ହେଲା । ସେ କିଛିକ୍ଷଣ ନୀରବରେ ରହି କର୍ତ୍ତବ୍ୟ ସ୍ଥିର କରିବାରେ ଲାଗିଲେ ।

ହଠାତ୍ ପଶ୍ଚାଦ୍ଦେଶରୁ "ଜୟ ସମଲଈର ଜୟ" ଶବ୍ଦ ଶ୍ରୁତି-ଗୋଚର ହେଲା, ବହୁ ସଂଖ୍ୟକ ଅଶ୍ୱାରୋହୀ ପର୍ବତରୁ ଅବତରଣ କରି ମରହଟ୍ଟା ସେନାଙ୍କୁ ଆକ୍ରମଣ କଲେ । ମରହଟ୍ଟାମାନେ ଏପରି ଅତର୍କିତ ଭାବରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ପ୍ରମାଦ ଗଣିଲେ । ବିଶେଷତଃ ସେତେବେଳକୁ ସେମାନେ ଗିରିସଙ୍କଟ ଭିତରକୁ ଆସି ସାରିଥିଲେଣି । ଏ ଆଡ଼େ ଘୋର ତାମସୀ ରଜନୀ, ତା'ପରେ ପୁଣି ଅଜ୍ଞାତ ପ୍ରଦେଶ । ଏପରି ଅବସ୍ଥାରେ ସେମାନେ ହଠାତ୍ ଶତ୍ରୁର ସମ୍ମୁଖୀନ ହୋଇ କଣ କରିବେ, କିଛି ଠିକ୍ କରି ପାରିଲେ ନାହିଁ । କିନ୍ତୁ ମହରଟ୍ଟା ଜାତି ସହଜରେ ଭୀତ ହେବାର ଜାତି ନୁହନ୍ତି । ସେମାନେ କପଟ ଯୁଦ୍ଧରେ ପଟୁ । ଶତ୍ରୁର ଏପରି ରୀତି ଦେଖି ସେତେବେଳେ ଯୁଦ୍ଧ କରିବା ଅନୁଚିତ ମନେକରି ସେମାନେ

ପୃଷ୍ଠଭଙ୍ଗ ଦେବାର ସ୍ଥିରକଲେ । ଶତ୍ରୁମାନେ ସେମାନଙ୍କୁ ପଳାୟନ ତତ୍ପର ଦେଖି ପଶ୍ଚାଦ୍ଧାବନ କଲେ ଏବଂ ଅବିରତ ତୀର ନିକ୍ଷେପ ଦ୍ୱାରା ଅନେକଙ୍କୁ ହତାହତ କଲେ । କିନ୍ତୁ ମରହଟ୍ଟାମାନେ ଶର-ନିକ୍ଷେପ ପ୍ରତି ଭ୍ରୂକ୍ଷେପ ନ କରି ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ସେମାନେ ନିଜେ ପଳାଇବାକୁ ସମର୍ଥ ହେଲେ ସୁଦ୍ଧା ପଶ୍ଚାଦ୍‌ଗାମୀ ମହିଳା ପ୍ରଭୃତିଙ୍କୁ ରକ୍ଷାକରି ପାରିଲେ ନାହିଁ । ସେ ସବୁ ଶତ୍ରୁମାନଙ୍କ ହସ୍ତଗତ ହେଲା । ଶତ୍ରୁମାନେ ମରହଟ୍ଟାମାନଙ୍କ ସମ୍ପତ୍ତି ଲୁଟି କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଜଣେ ପଞ୍ଚବିଂଶତି-ବର୍ଷୀୟ ଯୁବକ ଅଶ୍ୱ-ପୃଷ୍ଠରେ ପର୍ବତ ମଧ୍ୟରୁ ବାହାରି ସେମାନଙ୍କୁ ଲୁଣ୍ଠନ କାର୍ଯ୍ୟରୁ ନିବୃତ୍ତ କଲେ । ତାଙ୍କ ଆଦେଶମତେ ତାଙ୍କ ଅନୁଚରମାନେ ଶତ୍ରୁର ପଶ୍ଚାଦ୍ଧାବନ-କାର୍ଯ୍ୟରୁ ବିରତ ହୋଇ ଅରଣ୍ୟ ଭିତରକୁ ଚାଲିଗଲେ । ଯୁବକ କେତେଜଣ ବିଶ୍ୱସ୍ତ ଅନୁଚରଙ୍କୁ ତାଙ୍କ ଅପହୃତ ମରହଟ୍ଟା-ରମଣୀମାନଙ୍କୁ ସେମାନଙ୍କ ତତ୍ତ୍ୱାବଧାନରେ ମରହଟ୍ଟା-ସେନାପତିଙ୍କ ନିକଟକୁ ପ୍ରେରଣ କଲେ । କିନ୍ତୁ ଜଣେ ପଞ୍ଚଦଶ ବର୍ଷୀୟା ଯୁବତୀକୁ ବନ୍ଦୀକରି ରକ୍ଷୀଗଣ ସମଭିବ୍ୟାହାରରେ ନିଜ ଦୁର୍ଗକୁ ପଠାଇ ନିଜେ ଦୁର୍ଗାଭିମୁଖରେ ଅଗ୍ରସର ହେଲେ । ଉକ୍ତ ଯୁବତୀ ସଙ୍ଗେ ଜଣେ ଦାସୀ ସୁଦ୍ଧା ଇଚ୍ଛା ପୂର୍ବକ ବନ୍ଦୀ ହେଲା ।

ଗିରି-ଶିଖରାବସ୍ଥିତ ଦୁର୍ଗ ଭିତରକୁ ଯାଇ ଯୁବକ ଉପରୋକ୍ତ ଯୁବତୀକୁ ସ୍ୱ ଶିବିରକୁ ଡକାଇଲେ । ଯୁବତୀ ସଙ୍ଗରେ ଦାସୀ ମଧ୍ୟ ଆସିଲା । ଯୁବତୀକୁ ଦେଖି ଯୁବକ କହିଲେ "ସେନାପତି-ନନ୍ଦିନୀ, ଓଡ଼ିଆମାନଙ୍କ ଆଚରଣ ଦେଖି ରୁଷ୍ଟ ହେବେ ନାହିଁ । କ୍ଷତ୍ରିୟମାନେ ଯୁଦ୍ଧରେ ଜୟଲାଭ କରି ଶୂନ୍ୟ ହସ୍ତରେ ପ୍ରତ୍ୟାବୃତ୍ତ ହୁଅନ୍ତି ନାହିଁ । ଏଣୁ ଆଜି ସେନାପତି ନନ୍ଦିନୀ ଏ ଦୁର୍ଗରେ ବନ୍ଦିନୀ । କିନ୍ତୁ ତୁମ୍ଭର

ଭୟ କରିବାର କୌଣସି କାରଣ ନାହିଁ । ଦୁର୍ଗରେ ତୁମ୍ଭଙ୍କୁ ସମୁଚିତ ସମ୍ମାନ ଦିଆଯିବ ।"

ଯୁବକଙ୍କ କଥା ଶୁଣି ଯୁବତୀ ନୀରବରେ ତଳକୁ ମୁହଁ କରି କାନ୍ଦିବାରେ ଲଗିଲ । ଦାସୀ କହିଲ, "ଆପଣ ଆପଣଙ୍କ କାର୍ଯ୍ୟ କରିଛନ୍ତି । ସେଥିପାଇଁ ଆମ୍ଭେମାନେ ଆପଣଙ୍କୁ ନିନ୍ଦା କରୁ ନାହୁଁ । କିନ୍ତୁ ମରହଟ୍ଟା ଶିବିରରେ କି ଆଉ କିଛି ନ ଥିଲ ?"

"ଥାଇପାରେ । କିନ୍ତୁ ସେଥିରେ ଆମର ଲୋଭ ନାହିଁ । କ୍ଷତ୍ରିୟ ଜାତି ଚୋରି କରେ ନାହିଁ ।"

"ସେନାପତି ନନ୍ଦିନୀଙ୍କୁ ଏପରି ବଳ ପୂର୍ବକ ଆଣିବା ଚୋରିର କାର୍ଯ୍ୟ ନୁହେଁ କି ? ଆପଣ ବୀର—ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରିଛନ୍ତି । କିନ୍ତୁ ରମଣୀ ଉପରେ ଅତ୍ୟାଚାର ବୀରର କାର୍ଯ୍ୟ ନୁହେଁ ।"

"ରମଣୀ ଉପରେ କୌଣସି ଅତ୍ୟାଚାର ହୋଇନାହିଁ । ବୀରନାରୀ ବୀର-ଭୋଗ୍ୟା । ସେନାପତି ନନ୍ଦିନୀ ବୀର-ରମଣୀ; ସେ ବୀର-ପୁରୁଷର ଯୋଗ୍ୟା । ତାଙ୍କୁ ବୀର ପୁରୁଷ-ହସ୍ତରେ ନ୍ୟସ୍ତ ହେବାର ଦେଖିଲେ ସୁଖୀ ହେବ ।"

"ତାଙ୍କ ହୃଦୟ ରାଜ୍ୟରେ ରାଜା ହେବାପାଇଁ ମରହଟ୍ଟା ବୀର ଅଛନ୍ତି । ଏଠାରେ ରହିଲେ ତାଙ୍କ ମନରେ ଦୁଃଖଛଡ଼ା ସୁଖ ହେବ ନାହିଁ ।"

"ଯଦି ସେପରି ହୁଏ, ତାଙ୍କ ମନରେ କଷ୍ଟ ଦେବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଏଇକ୍ଷଣି ତାଙ୍କୁ ନିରାପଦରେ ତାଙ୍କ ପିତାଙ୍କ ନିକଟକୁ ପଠାଇ ଦେବି । ଓଡ଼ିଆ ଜାତି ଅବଳା ପ୍ରତି ସମ୍ମାନ ଦେଖାଇ ଜାଣେ, ସେନାପତି ନନ୍ଦିନୀ ପିତୃ-ଶିବିରରେ ଥାଇ ଦେଖିବେ ଯେ, ଓଡ଼ିଆବୀର ମରହଟ୍ଟାବୀର ଅପେକ୍ଷା ନିକୃଷ୍ଟ ନୁହେଁ ।"

ଯୁବକର ଶେଷ ବାକ୍ୟ ଶୁଣି ଯୁବତୀ କୌତୁକ ସମ୍ବରଣ କରି ତାଙ୍କ ଆଡ଼କୁ ଅନାଇଲା । ଯୁବକଙ୍କ ମୁଖରେ ଉଦାରତାର ସ୍ପଷ୍ଟ ଚିହ୍ନ ଦେଖି ସେ ମୁଗ୍ଧ ହୋଇଗଲା । ଇତ୍ୟବସରରେ ଯୁବକଙ୍କ ଚକ୍ଷୁ ସହିତ ତାହାର ଚକ୍ଷୁ ମିଳିତ ହେଲା । ସେ ଲଜ୍ଜାରେ ତଳକୁ ଅନାଇବାକୁ ଲାଗିଲା । ଯୁବକଙ୍କ ପ୍ରତି ପୂର୍ବେ ଯେ ବିରକ୍ତି ଜନ୍ମିଥିଲା, ତାହା କେଉଁଆଡ଼େ ଉଡ଼ିଗଲା । ତାହାର ଶରୀରର ପ୍ରତ୍ୟେକ ଶିରାରେ ଅନନୁଭୂତ ତଡ଼ିତ୍-ପ୍ରବାହ ବହିବାକୁ ଲାଗିଲା । ଯୁବତୀର ଭାବାନ୍ତର ଦେଖି ଯୁବକ କହିଲେ, "ଯଦି ସେନାପତି-ନନ୍ଦିନୀଙ୍କ ଇଚ୍ଛା ହୁଏ, ତାହାହେଲେ ତାଙ୍କୁ ଅନତି-ବିଳମ୍ବେ ପିତୃ-ସମୀପକୁ ପଠାଇବାର ବନ୍ଦୋବସ୍ତ କରିବି ।"

ଦାସୀ ଉତ୍ତର ଦେବାକୁ ଅସମର୍ଥ ହୋଇ ଯୁବତୀର ମୁଖ ଆଡ଼କୁ ଅନାଇଲା । ତାହାର ମନର ଭାବ ବୁଝିପାରି ଯୁବତୀ ବିପଦରେ ପଡ଼ିଲା । ଯୁବକଙ୍କ ପ୍ରତି ଅଲକ୍ଷିତରେ ତାର ଆନ୍ତରିକ ଶ୍ରଦ୍ଧା ଜାତ ହୋଇଛି । ତାଙ୍କୁ ଛାଡ଼ିଯିବା ଅଧୁନା ଏକାବେଳକେ ଅସମ୍ଭବ । ଏ ଆଡ଼େ ପୁଣି ଶତ୍ରୁ ଦୁର୍ଗରେ ବନ୍ଦୀହୋଇ ରହିବା ଅସହ୍ୟ । ଯୁବତୀକୁ ଆଉ ବୁଝିବାକୁ କିଛି ଦିଶିଲା ନାହିଁ । ପରେ ସେ ବହୁ କଷ୍ଟରେ କହିଲା, "ଯଦି ମରହଟ୍ଟା ସେନାପତିଙ୍କ ବାହୁରେ ବଳଥାଏ, ସେ ନିଜେ ଆସି ମତେ ମୁକୁଳାଇବେ । ମରହଟ୍ଟା-ରମଣୀ ଶତ୍ରୁର କୃପାର ପାତ୍ର ହେବାକୁ ସୁଖକର ମଣେନାହିଁ ।"

ତାହାର ଏ କଥା ଶୁଣି ଯୁବକ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ମନେ ମନେ ତାକୁ ପ୍ରଶଂସା କରିବାକୁ ଲାଗିଲେ । ପରେ ଉଭୟଙ୍କ ରହିବାର ସୁବନ୍ଦୋବସ୍ତ କରି ଦୁର୍ଗ ରକ୍ଷାର୍ଥ ଦୁର୍ଗ-ଦ୍ୱାରଆଡ଼େ ଅଗ୍ରସର ହେଲେ ।

# ଦ୍ୱିତୀୟ ପରିଚ୍ଛେଦ

## ସଂକ୍ଷିପ୍ତ ପରିଚୟ

"— ନ ପାରିଲେ ଜଣି,
ଯୁଦ୍ଧ କ୍ଷେତ୍ରେ ମରିବାଟ ନିଜ ହାତ କଥା ।" [ମହାଯାତ୍ରା]

ମରହଟ୍ଟା-ସେନାପତି-ନନ୍ଦିନୀଙ୍କ ଗିରି ଦୁର୍ଗରେ ଛାଡ଼ି ସମ୍ବଲପୁରର ତଦାନୀନ୍ତନ ଇତିହାସ ବିଷୟରେ ଆଲୋଚନା କଲେ, ବୋଧହୁଏ ଅସଙ୍ଗତ ହେବନାହିଁ । ଉପନ୍ୟାସ-ରସିକ ପାଠକମାନେ ନୀରସ ଇତିବୃତ୍ତ ବୃତ୍ତାନ୍ତ ଜାଣିବାକୁ ଅନିଚ୍ଛୁକ ହୋଇ ପାରନ୍ତି । କିନ୍ତୁ ଲେଖକ ନାଚାର । ଗଳ୍ପକୁ ପୂର୍ଣ୍ଣାଙ୍ଗ କରିବାକୁ ଗଲେ ଇତିହାସ ବିଷୟରେ ଦୁଇଚାରି କଥା କହିବା ଦରକାର, ନୋହିଲେ ଏ ଗଳ୍ପର ଐତିହାସିକ ବ୍ୟକ୍ତିମାନେ ଆଂଶିକ ରୂପେ ଅପରିଚିତ ହୋଇ ରହିଯିବେ । ଏଣୁ ପାଠକମାନେ ଅନୁଗ୍ରହ କରି କ୍ଷମା କରିବେ ।

ଅଷ୍ଟାଦଶ ଶତାବ୍ଦୀରେ ଭାରତରେ ମରହଟ୍ଟାମାନଙ୍କ ଅପ୍ରତିହତ ପ୍ରଭାବ ବିସ୍ତାରିତ ହୋଇଥିଲା । ସେମାନେ ଭାରତର ଏକ ପ୍ରାନ୍ତରୁ ଅପରପ୍ରାନ୍ତ ଯାଏଁ ସମର ଘୋଷଣା କରି ଭାରତରେ ହିନ୍ଦୁ ସାମ୍ରାଜ୍ୟ ସଂସ୍ଥାପନ କରିବାକୁ ପ୍ରୟାସୀ ହୋଇଥିଲେ । କିନ୍ତୁ ଏ ସମୟରେ ସେମାନଙ୍କ ପତନର ସୂତ୍ରପାତ ହୋଇଥିଲା ମଧ୍ୟ । ମରହଟ୍ଟା ରାଜ୍ୟ ପ୍ରତିଷ୍ଠାତା ଶିବାଜୀଙ୍କ ନୀତି ଛାଡ଼ି ସେମାନେ ହିନ୍ଦୁ ରାଜ୍ୟରେ ସୁଦ୍ଧା ନୃଶଂସ ଦସ୍ୟୁବୃତ୍ତି ଆଚରଣ କରୁଥିଲେ । ଅର୍ଥଲୋଭରେ ପଡ଼ି ସେମାନେ ଭାରତର ପବିତ୍ର ବକ୍ଷରେ ରକ୍ତର ନଦୀ ପ୍ରବାହିତ କରୁଥିଲେ ।

ଏହି ସମୟରେ ସମ୍ବଲପୁର ରାଜ୍ୟର ପ୍ରଶାନ୍ତ ମୁଖରେ ସ୍ୱାଧୀନତାର ସୁମଧୁର ହାସ୍ୟ ପ୍ରତିଭାତ ହେଉଥିଲା । ସମ୍ବଲପୁର

ବାଣିଜ୍ୟରେ, ବୀର୍ଯ୍ୟରେ, ଐଶ୍ୱର୍ଯ୍ୟରେ ଭାରତର ଅନ୍ୟାନ୍ୟ ସ୍ୱାଧୀନ ରାଜ୍ୟମାନଙ୍କ ସମକକ୍ଷ ହୋଇ ସଭ୍ୟ ଜଗତରେ ମୁଖ ଦେଖାଇବାକୁ ସମର୍ଥ ହୋଇଥିଲା । ସମ୍ବଲପୁରର ହୀରକ-ବାଣିଜ୍ୟ ଭାରତବର୍ଷର ତଦାନୀନ୍ତନ ଗଭର୍ଣ୍ଣର ଲର୍ଡ଼ କ୍ଲାଇବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସମ୍ବଲପୁର ହୀରାପାଇଁ ଚିରକାଳ ପ୍ରସିଦ୍ଧ । Ptolemy, Pliny ପ୍ରଭୃତି ବୈଦେଶିକ ଲେଖକମାନେ ଏହି ହୀରା ବିଷୟରେ ଅନେକ କଥା ଲେଖିଅଛନ୍ତି । ପ୍ରସିଦ୍ଧ ଇତିହାସ-ଲେଖକ Gibbon ଲେଖିଅଛନ୍ତି— "As well as we can compare ancient with modern geography, Rome was supplied with diamond from the mine of Sambalpur in Bengal" ସେ ତ ପୁରାତନ ଯୁଗର କଥା । ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେହି ସମୟରେ ମଧ୍ୟ ସମ୍ବଲପୁରର ହୀରକ-ବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା । ହାୟ ! ଆଜି ସେ ହୀରାକୁଦ ଅଛି, ସେହି ସମ୍ବଲପୁର ଅଛି; ସେହି ମହାନଦୀ କଳକଳ ରବରେ ସମ୍ବଲପୁରବାସୀଙ୍କୁ ମୁଗ୍ଧକର ମାତୃ-ସ୍ତନ-ଧାରା ପ୍ରାୟେ ସମ୍ବଲପୁରର ବକ୍ଷରେ ପ୍ରବାହିତ ହେଉଅଛି । କିନ୍ତୁ ସେ ହୀରକ କାହିଁ ! ସେ ବୀର ପୁରୁଷମାନେ କାହାନ୍ତି ! ହାୟ, ସେ ଦିନ ଆଉ ଏ ଦିନ !

ଖ୍ରୀଷ୍ଟାବ୍ଦ ୧୭୭୦ ସାଲଯାଏଁ ସମ୍ବଲପୁରରେ ଶତ୍ରୁର ନାମ ସୁଦ୍ଧା ଶୁଣା ନ ଥିଲା । କିନ୍ତୁ ଯେତେବେଳେ ମରହଟ୍ଟାମାନେ ଓଡ଼ିଶାର ବିପୁଳ ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ଓଡ଼ିଶାରୁ ରଜତ ସଂଗ୍ରହକରିବା ଆଶାରେ ହିନ୍ଦୁ-ରାଜ୍ୟରେ ସୁଦ୍ଧା ଲୁଣ୍ଠନ ଆରମ୍ଭ କଲେ, ଓଡ଼ିଶାର ଦକ୍ଷିଣ ବାହୁରୂପୀ ସମ୍ବଲପୁର ରାଜ୍ୟ ମରହଟ୍ଟା ବର୍ଗୀମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇଥିଲା । ସମ୍ବଲପୁରର ବିଖ୍ୟାତ ନରପତି ଅଭୟ ସିଂହଙ୍କ ଶାସନ କାଳରେ ମରହଟ୍ଟାମାନଙ୍କ ଆକ୍ରମଣର ସୂତ୍ରପାତ ହେଲା ।

କେତେଗୋଟି ମରହଟ୍ଟା ପୋତ ତୋପଦ୍ୱାରା ବୋଝାଇ ହୋଇ କଟକରୁ ମହାନଦୀ ବକ୍ଷରେ ନାଗପୁର ଅଭିମୁଖରେ ଯାତ୍ରା କରୁଥିଲା । ଯେତେବେଳେ ପୋତ ଗୁଡ଼ିକ ସମ୍ବଲପୁରର ନିକଟବର୍ତ୍ତୀ ହେଲା, ଅଭୟସିଂହ ତାଙ୍କର ପ୍ରଧାନମନ୍ତ୍ରୀ ଅକବର ରାୟଙ୍କ ପରାମର୍ଶ ଅନୁସାରେ ଉକ୍ତ ପୋତଗୁଡ଼ିକୁ ମହାନଦୀ ବକ୍ଷରେ ନିମଜ୍ଜିତ କରି ତୋପସବୁ ଅଧିକାର କଲେ । ନାଗପୁରାଧିପତି ଏ ସମ୍ବାଦ ପାଇ କ୍ରୋଧରେ ଅଧୀର ହୋଇଗଲେ । ଅଭୟସିଂହଙ୍କୁ ସମୁଚିତ ଶାସ୍ତିଦେବା ସକାଶେ ସେ ତାଙ୍କ ବିରୁଦ୍ଧରେ ବିପୁଳ ବାହିନୀ ପ୍ରେରଣ କଲେ । ଉକ୍ତ ବାହିନୀକୁ ପାଠକମାନେ ସିଙ୍ଘୋରା ଗିରି-ସଙ୍କଟରେ ଦେଖି-ଅଛନ୍ତି ଏବଂ ସେଠାରେ ଯାହା ଯାହା ଘଟିଲା, ତହିଁର ବିସ୍ତୃତ ବିବରଣ ପୂର୍ବ ପରିଚ୍ଛେଦରେ ପ୍ରଦତ୍ତ ହୋଇଅଛି ।

ମରହଟ୍ଟାମାନଙ୍କ ତୋପସବୁ ଅଧିକାର କରି ଅଭୟସିଂହ ଦୁର୍ଗରକ୍ଷାର ସୁବନ୍ଦୋବସ୍ତ କରିବାକୁ ଲାଗିଲେ । ଅଠର ଗଡ଼ଜାତରୁ (୧) ସୁଶିକ୍ଷିତ ଓଡ଼ିଆ ସୈନିକମାନେ ଆସି ସମ୍ବଲପୁର ଦୁର୍ଗରେ ସମବେତ ହେଲେ, ସମ୍ବଲପୁରରେ ଉତ୍ସାହର ଲହରୀ ନାଚି ଉଠିଲା । ଗ୍ରାମେ ଗ୍ରାମେ ସମର ସମ୍ବାଦ ପ୍ରଚରିତ ହେଲା । ମା' ସମଲେଶ୍ୱରୀଙ୍କ ରାଜ୍ୟରେ ଶାନ୍ତି ସଂସ୍ଥାପନ ସକାଶେ ଦୃଢ଼ପ୍ରତିଜ୍ଞ ହୋଇ ସମ୍ବଲପୁର-ବାସୀମାନେ ପ୍ରାଣର ମମତା ଭୁଲି "ହୀରାଖଣ୍ଡ ଛତ୍ରପତି ମହାରାଜ"

---

୧—କଳାହାଣ୍ଡି, ପାଟଣା, ସୋନପୁର, ରେଢ଼ାଖୋଲ, ବଉଦ, ବାମଣ୍ଡା, ଅଠମଲ୍ଲିକ, ଚାନ୍ଦପୁର, ବଣାଇ, ଶକ୍ତି, ରାଇଗଡ଼ ପ୍ରଭୃତି ଅଠର ଗୋଟି ରାଜ୍ୟ ସମ୍ବଲପୁରର ଅଧୀନରେ ଥିଲା ।

(୧) ଅଭୟ ସିଂହଙ୍କ ଛକ ତଳେ ସମବେତ ହେବାକୁ ଲାଗିଲେ । ସେମାନଙ୍କ ଆୟୋଜନ କୋଳାହଳରେ ସମଗ୍ର ସମ୍ବଲପୁର ନିନାଦିତ ହୋଇ ସୁପ୍ତ ପ୍ରାଣରେ ପୁଣି ଜାଗରଣ-ମନ୍ତ୍ର ପଢ଼ିବାକୁ ଲାଗିଲା । ମା' ସମଲେଶ୍ୱରୀଙ୍କ ରଣ-ରଙ୍ଗିଣୀ ମୂର୍ତ୍ତି ଭୟଙ୍କର ହେଲା ।

ସ୍ଥଳ ପଥରେ ମରହଟ୍ଟାମାନଙ୍କ ଗତିରୋଧ କରିବାର ଉପଯୁକ୍ତ ସ୍ଥାନ ମଣି ଅଭୟସିଂହ ସିଂଘୋଡ଼ା ଗିରି-ସଙ୍କଟକୁ ବହୁ ସଂଖ୍ୟକ ସୈନିକ ପ୍ରେରଣ କଲେ । ବହୁ-ଗିରି-ପରିଶୋଭିତ ସମ୍ବଲପୁର ରାଜ୍ୟରେ ସିଂଘୋଡ଼ା ଅନେକ ଥର ସମ୍ବଲପୁରର ମାନରକ୍ଷା କରିଅଛି । ଆଜି ଅଭୟସିଂହ ନିଜେ ସମ୍ବଲପୁର-ଦୁର୍ଗରକ୍ଷାର ଭାରନେଇ ତାଙ୍କ ସେନାପତି ପୃଥ୍ୱୀସିଂହଙ୍କ ଅଧୀନରେ ଅନେକ ସୈନ୍ୟ ସିଂଘୋଡ଼ାରେ ମରହଟ୍ଟାମାନଙ୍କ ଦର୍ପ ଚୂର୍ଣ୍ଣ କରିବା ସକାଶେ ପଠାଇଥିଲେ ।

ପୃଥ୍ୱୀସିଂହ ସିଂଘୋଡ଼ାକୁ ଆସି ପ୍ରଥମେ ଗିରି-ଶିଖର-ସ୍ଥିତ ଗୋଟିଏ ପାର୍ବତ୍ୟ ଦୁର୍ଗରେ ଆଶ୍ରୟ ଗ୍ରହଣ କଲେ । ସେଠାରେ ବହୁଦିନର ଖାଦ୍ୟ ସଂଗୃହୀତ ହେବା ସଙ୍ଗେ ସଙ୍ଗେ ଦୁର୍ଗ-ରକ୍ଷାର ମଧ୍ୟ ସୁବନ୍ଦୋବସ୍ତ ହେବାକୁ ଲାଗିଲା । ଦୁର୍ଗରେ ଅଳ୍ପ ସଂଖ୍ୟକ ସୈନିକ ରଖି ଅବଶିଷ୍ଟ ସୈନିକମାନଙ୍କୁ ପୃଥ୍ୱୀସିଂହ ଗିରିସଙ୍କଟର ସ୍ଥାନେ ସ୍ଥାନେ ଲୁଚାଇ ରଖିଲେ ଓ ଦୁର୍ଗ ପ୍ରାଚୀରରେ ଲତା-ଗ୍ରଥିତ ପ୍ରସ୍ତରଗୁଡ଼ିକୁ ଝୁଲାଇ ରଖିଲେ । ନିଜେ ଦକ୍ଷତା ସହକାରେ ସର୍ବଦା ସେନା-ନିବେଶ ପର୍ଯ୍ୟବେକ୍ଷଣ କରି ସେ ମରହଟ୍ଟାମାନଙ୍କ ଆଗମନର ପ୍ରତୀକ୍ଷା କରିବାକୁ ଲାଗିଲେ ।

---

୧ — ସମ୍ବଲପୁରର ନରପତି ବଳୀୟାର ସିଂହ ସ୍ୱୀୟ ବୁଦ୍ଧିମତ୍ତା ଓ ଶକ୍ତିର ପରିଚୟ ଦେଇ ଓଡ଼ିଶାର ଗଜପତି ମହାରାଜାଙ୍କଠାରୁ ଏ ଉପାଧିସହ ତାଙ୍କ କନ୍ୟାରତ୍ନ ଲାଭ କରିଥିଲେ । ଇତିହାସରେ ସମ୍ବଲପୁରର ଅଧିପତିମାନେ ଏହି ଉପାଧିରେ ପରିଚିତ ।

ମରହଟ୍ଟାମାନେ ଇତିହାସରେ କପଟ-ଯୁଦ୍ଧ ନିମନ୍ତେ ବିଖ୍ୟାତ । ସେମାନେ ସମ୍ମୁଖ ସମରରେ କଦାପି ଶତ୍ରୁ ସଙ୍ଗେ ଯୁଦ୍ଧ କରନ୍ତି ନାହିଁ । ଏହି ନୀତି ସେମାନଙ୍କୁ ଭାରତରେ ଏକାଧିପତ୍ୟ ଦେଇଥିଲା । କିନ୍ତୁ ଯେଉଁଦିନ ସେମାନେ ଏ ନୀତି ପରିତ୍ୟାଗ କଲେ, ସେହି ଦିନଠାରୁ ସେମାନଙ୍କର ପତନର ଆରମ୍ଭ ହେଲା । ଯଦି ୧୭୬୧ ଖ୍ରୀଷ୍ଟାବ୍ଦରେ ସେମାନେ ପାଣିପଥ ଯୁଦ୍ଧ କ୍ଷେତ୍ରରେ ସମ୍ମୁଖ-ସମରରେ ପ୍ରବୃତ୍ତ ହୋଇ ନ ଥାନ୍ତେ, ତାହାହେଲେ ଅହମ୍ମଦ ଶାହ ଅବଦାଲି ଭାରତକୁ ପଦଦଳିତ କରିପାରି ନ ଥାନ୍ତେ । ଆଜି ଭାରତବର୍ଷରେ ମରହଟ୍ଟା-ମାନଙ୍କ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥାନ୍ତା । କିନ୍ତୁ ବିଧାତାଙ୍କ ଇଚ୍ଛା କିଏ ଏଡ଼ିପାରେ ?

ମରହଟ୍ଟା ସେନାପତି ରଘୁଜୀ ରାଓ କପଟ ଯୁଦ୍ଧରେ ପାରଦର୍ଶୀ ଥିଲେ । ସେ ସିନ୍ଧୋରା ନିକଟକୁ ଆସି ଦେଖିଲେ ଯେ, ସାବଧାନ ଭାବରେ ଗିରିସଙ୍କଟ ପାର ନ ହେଲେ ବିପଦ ଅବଶ୍ୟମ୍ଭାବୀ । ତାଙ୍କ ସଙ୍ଗେ ବହୁ ସଂଖ୍ୟକ ସୈନିକ ଥିଲେ । ତାଙ୍କ ପରିବାର ମଧ୍ୟ ତାଙ୍କ ସଙ୍ଗେ ଯୁଦ୍ଧକୁ ଆସିଥିଲେ ।

ଅରୁଣା ରଘୁଜୀ ରାଓଙ୍କ ଏକମାତ୍ର କନ୍ୟା । ରଘୁଜୀ ତାକୁ ଅତିଶୟ ସ୍ନେହ କରୁଥିଲେ ଏବଂ ତାକୁ ଘଡ଼ିଏ ନ ଦେଖିଲେ ତାଙ୍କର ଆଖି ଅନ୍ଧାର ହୋଇ ଯାଉଥିଲା । ପିତାଙ୍କ ସଙ୍ଗେ ରହି ଅରୁଣା ଯୁଦ୍ଧବିଦ୍ୟାରେ ନିପୁଣତା ଲାଭ କରିଥିଲା । ବୀରପ୍ରାଣା ଅରୁଣାର ହୃଦୟ ରଣଯାତ୍ରାର ନାମ ଶୁଣି ନାଚି ଉଠୁଥିଲା । ରଣ-କୋଳାହଳ, ରଣବାଦ୍ୟ, ରଣନୃତ୍ୟ ତାହାର ହୃଦୟକୁ ପ୍ରବଳ ବେଗରେ ଆକର୍ଷଣ କରୁଥିଲା । ବୟଃପ୍ରାପ୍ତା ହେବାପରେ ସୁଦ୍ଧା ସେ ପିତାଙ୍କ ସଙ୍ଗେ ଯୁଦ୍ଧକୁ ଯାଉଥିଲା । ଏପରି ରଣ-ସଙ୍ଗିନୀ, ରଣ-ରଙ୍ଗିଣୀ କନ୍ୟାର ପିତୃତ୍ୱରେ ରଘୁଜୀ ରାଓ ଆପଣାକୁ ଯଥେଷ୍ଟ ଗୌରବାନ୍ୱିତ

ମନେ କରୁଥିଲେ । ଯେତେବେଳେ ରଘୁଜୀ ଅରୁଣା ସଙ୍ଗେ ଅଶ୍ୱାରୋହଣରେ ଯୁଦ୍ଧ କ୍ଷେତ୍ରକୁ ଯାଉଥିଲେ, ସେତେବେଳେ କନ୍ୟାର ଅପୂର୍ବ କାନ୍ତି ଦେଖି ଆପଣାକୁ ଭାଗ୍ୟବାନ ମଣୁଥିଲେ । ଅରୁଣାର ଅରୁଣ-ନିଭ-ଆନନ, ସୁଗୋଲ-ବାହୁଯୁଗଳ, ପ୍ରଶସ୍ତ ଲଲାଟ, ନିତମ୍ବସ୍ପର୍ଶୀ କେଶପାଶ ରଘୁଜୀଙ୍କ ମନରେ ଦଶପ୍ରହରଣଧାରିଣୀ ମହିଷାସୁର ମର୍ଦ୍ଦିନୀ ଜଗଦମ୍ବାଙ୍କ ମୂର୍ତ୍ତି ଅଙ୍କିତ କରୁଥିଲା । ତାଙ୍କ ଚକ୍ଷୁରୁ ସ୍ନେହାଶ୍ରୁ ନିର୍ଗତ ହେଉଥିଲା ।

ଯେଉଁଦିନ ରଘୁଜୀ ରାଓ ସିନ୍ଧୋରା ଗିରିସଙ୍କଟରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହେଲେ, ସେ ଦିନ ପ୍ରଭାତରେ ପୃଥ୍ୱୀ ସିଂହ ଅନ୍ତରାଳରେ ଥାଇ ଅରୁଣାଲୋକବିଭାସିତ ଅରୁଣାର ମୁଖକମଳ ଦେଖି ଚିତ୍ର ପୁତ୍ତଳିକାବତ୍ ଛିଡ଼ା ହୋଇ ରହିଲେ । ଏପରି ସ୍ୱର୍ଗୀୟ କାନ୍ତି ସେ ଜୀବନରେ କେବେ ଦେଖି ନ ଥିଲେ । ଆଜି ମରହଟ୍ଟା-ଶିବିରରେ ମୂର୍ତ୍ତିମତୀ ସୌନ୍ଦର୍ଯ୍ୟ ରାଶି ଦେଖି ତାଙ୍କ ଚକ୍ଷୁ ଲାଖି ରହିଗଲା । ସେ ହୃଷ୍ଟଚିତ୍ତ ନେତ୍ରରେ ଅରୁଣାର ରୂପ ରାଶିର ପ୍ରଶଂସା କରିବାକୁ ଲାଗିଲେ । ଅରୁଣା-ପ୍ରାପ୍ତି-ଆଶା ତାଙ୍କ ହୃଦୟରେ ବଳବତୀ ହେଲା । ଏଣୁକରି ଯେତେବେଳେ ଓଡ଼ିଆ ବୀରମାନେ ମରହଟ୍ଟାମାନଙ୍କୁ ପରାସ୍ତ କଲେ, ପୃଥ୍ୱୀ ସିଂହ କୌଣସି ପଦାର୍ଥକୁ ସ୍ପର୍ଶ ନ କରି କେବଳ ଅରୁଣାକୁ ଦୁର୍ଗ ଭିତରକୁ ଆଣିଲେ ।

ଶତ୍ରୁ ଦୁର୍ଗରେ ଅରୁଣାର ବନ୍ଦୀ ହେବାର ସମ୍ବାଦ ଶୁଣି କନ୍ୟା-ବତ୍ସଳ ରଘୁଜୀ ରାଓ ଅତିଶୟ କାତର ହୋଇ ପଡ଼ିଲେ । ଯାକୁ ଘଡ଼ିଏ ନ ଦେଖିଲେ ସେ ଜଗତକୁ ବିଷମୟ ମଣୁଥିଲେ, ଆଜି ସେ ପ୍ରାଣ ପ୍ରତିମା ଅରୁଣା ଶତ୍ରୁ ହସ୍ତରେ ବନ୍ଦୀ ! ପୃଥ୍ୱୀ ସିଂହଙ୍କ ଏତାଦୃଶ ଆଚରଣ ଦେଖି ତାଙ୍କ ମନରେ ଅତିଶୟ କ୍ରୋଧ ଜାତ ହେଲା । ପୃଥ୍ୱୀ ସିଂହଙ୍କୁ ସମୁଚିତ ଶାସ୍ତି ଦେଇ କନ୍ୟାକୁ ନିଷ୍କୃତ କରିବାର

ସ୍ଥିର କଲେ । ତାଙ୍କ ଆଦେଶ ଅନୁସାରେ ମରହଟ୍ଟା ଅଶ୍ୱାରୋହୀମାନେ ଦଳ ଦଳ ହୋଇ ଓଡ଼ିଆମାନଙ୍କ ରକ୍ତରେ ସ୍ୱୀୟ ତରବାରୀ ରଞ୍ଜିତ କରିବା ଅଭିପ୍ରାୟରେ ଗିରିସଙ୍କଟରେ ପ୍ରବେଶ କଲେ । କିନ୍ତୁ ଗିରିସଙ୍କଟ ଏତେ ସଂକୀର୍ଣ୍ଣ ଯେ, କେବଳ ଅଳ୍ପ ସଂଖ୍ୟକ ସୈନିକ ଭିତରକୁ ଯାଇ ପାରୁଥିଲେ । ସଙ୍କଟର ସ୍ଥାନେ ସ୍ଥାନେ ପ୍ରଚ୍ଛନ୍ନ ଓଡ଼ିଆ ସୈନିକମାନେ ସେମାନଙ୍କୁ ଅତର୍କିତ ଭାବରେ ଆକ୍ରମଣ କରି ପ୍ରସ୍ତ କରୁଥିଲେ । ଗିରିଦୁର୍ଗ ମରହଟ୍ଟାମାନଙ୍କ ଦୁର୍ଗମ ହୋଇ ପଡ଼ିଲା । ରଘୁଜୀ ରାଓ ଅନେକ ଥର ସୈନ୍ୟ ପ୍ରେରଣ କଲେ, କିନ୍ତୁ ତାହାଙ୍କର ସକଳଚେଷ୍ଟା ବିଫଳ ହେଲା, ମରହଟ୍ଟାମାନେ ଶତ୍ରୁ-ଦୁର୍ଗକୁ ଯିବା ତ ଦୂରେ ଥାଉ, ଦୁର୍ଗକୁ ଦେଖି ସୁଦ୍ଧା ପାରିଲେ ନାହିଁ ।

ପୃଥ୍ୱୀ ସିଂହଙ୍କ ଅପୂର୍ବ ରଣ ପାଣ୍ଡିତ୍ୟ ଦେଖି ବୀରହୃଦୟ ରଘୁଜୀ ରାଓ ତାହାଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ସେ ଜାଣନ୍ତି ଯେ ଓଡ଼ିଆ ସୈନ୍ୟ ଅପେକ୍ଷା ତାଙ୍କ ସୈନ୍ୟ ଅନେକ ଗୁଣରେ ବେଶି; କିନ୍ତୁ ପୃଥ୍ୱୀ ସିଂହ ଏପରି କୌଶଳରେ ବ୍ୟୂହ ରଚନା କରିଥିଲେ ଯେ ବ୍ୟୂହ ଭେଦ କରିବା ରଘୁଜୀ ରାଓଙ୍କ ସାଧ୍ୟାତୀତ ହୋଇ ପଡ଼ିଲା, ସେ ଶତ ଚେଷ୍ଟା କଲେ ବି ଦୁର୍ଗ ନିକଟକୁ ଯାଇ ପାରିଲେ ନାହିଁ । ଦୁର୍ଗର ଏପରି ଦୁର୍ଗମତା ଦେଖି ତାଙ୍କ ମନରେ ଅତିଶୟ କଷ୍ଟ ହେଲା । ସେ ଯୁଦ୍ଧରେ କେବେ ପରାଜୟ ସ୍ୱୀକାର କରି ନ ଥିଲେ, ଆଜ ପୃଥ୍ୱୀସିଂହଙ୍କ ସଙ୍ଗେ ଅବିଶ୍ରାନ୍ତ ପାଞ୍ଚମାସ କାଳ ଯୁଦ୍ଧକରି ସୁଦ୍ଧା ସେ ଶତ୍ରୁଦୁର୍ଗ ଆକ୍ରମଣ କରି ପାରିଲେ ନାହିଁ । ସବୁବେଳେ ଅରୁଣାର ମୂର୍ତ୍ତି ତାଙ୍କ ଚକ୍ଷୁ ସମକ୍ଷରେ ନାଚିବାକୁ ଲାଗିଲା । ଯେତେବେଳେ ରଘୁଜୀ ଭାବନ୍ତି ଯେ ଅରୁଣା ଶତ୍ରୁ ହସ୍ତରେ ବନ୍ଦିନୀ, ସେତେବେଳେ ତାଙ୍କ ହୃଦୟ ଶୋକାକୁଳ ହୋଇଯାଏ, ଅରୁଣାମୁକ୍ତି-ସଂକଳ୍ପ ତାଙ୍କ ହୃଦୟରେ ଜାଗ୍ରତ ହୁଏ । ଜୀବନର ସକଳ ଆଶା, ସକଳ ଭରସା ବିଲୁପ୍ତ ହୋଇଯାଏ ।

ଯୁଦ୍ଧର ଏପରି ଗତି ଦେଖି ରଘୁଜୀ ସ୍ଥିର କଲେ ଯେ, ଏଥର ସେ ନିଜେ ଯାଇ ଗୈରସଙ୍କଟ ଭେଦ କରିବେ; ପ୍ରାଣର ମମତା ଭୁଲି ଶତ୍ରୁର ଆଚରଣର ପ୍ରତିହିଂସା ନେବେ । ପୃଥ୍ୱୀସିଂହ ରଘୁଜୀଙ୍କ ବାସନା ଗୁପ୍ତଚର ମୁଖରୁ ଶୁଣି ବିଶେଷ ସତର୍କ ଭାବରେ ଅବସ୍ଥାନ କରିବାକୁ ଲାଗିଲେ । ଗୈରସଙ୍କଟର ସ୍ଥାନେ ସ୍ଥାନେ ଓଡ଼ିଆ ସୈନିକମାନେ ପ୍ରଚ୍ଛନ୍ନ ଭାବରେ ରହି ଶତ୍ରୁର ଆଗମନ ପ୍ରତୀକ୍ଷା କରିବାକୁ ଲାଗିଲେ ।

# ତୃତୀୟ ପରିଚ୍ଛେଦ

## ପୃଥ୍ୱୀ ସିଂହ ଓ ଅରୁଣା

"ତା' ହୃଦକୁ ଅସେ ଯେବେ ନୈରାଶ୍ୟ ଦଉଡ଼ି,
ମାୟାବିନୀ ଆଶା ଦିଏ ତୁରିତେ ଘଉଡ଼ି" । [କୀଚକବଧ]

"ମାଧବ ! ଆଜିକାଲି ଯୁଦ୍ଧର ଖବର ତ କିଛି ଜଣା ଯାଉନାହିଁ ।"

"ଭାରି ଯୁଦ୍ଧ ତ ଲାଗିଛି । ମରହଟ୍ଟାମାନେ ଯେତେଥର ଆସୁଛନ୍ତି, ସେତେଥର ପରାସ୍ତ ହେଉଛନ୍ତି । ଏ ଯୁଦ୍ଧ କେବେ ସରିବ, ଭଗବାନ୍ ଜାଣନ୍ତି ।"

"ଅତି ଅଦ୍ଭୁତ ବୀର ପୁରୁଷ ।"

"ମୁଁ ବି ସେଇୟା ଭାବୁଛି । ଇମିତି ଯୋଦ୍ଧା ମୁଁ କେବେ ଦେଖି ନାହିଁ । କେତେ ମରହଟ୍ଟା ସୈନ୍ୟ ! ତଥାପି ଖାତିର୍ ନାହିଁ—ଖାଲି ଯୁଦ୍ଧ ! ଯୁଦ୍ଧ ଦେଖି ଦେଖି ମନ ବିରକ୍ତ ହୋଇ ଗଲାଣି ।"

"ଓଡ଼ିଆ ଜାତିରେ ଏପରି ବୀର ଅଛନ୍ତି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।"

"ତାଙ୍କ ବୀରତ୍ୱରେ ଯଦି ମୁଗ୍ଧ ହୋଇଥାଅ, ତାଙ୍କ ବୀର ମୂର୍ତ୍ତିକୁ ହୃଦୟରେ ସ୍ଥାପନ କର ନା ?"

"ଛି, ମାଧବି ! ସେପରି କଥା କୁହନା ।"

"କାହିଁକି ? କହିଲେ ଦୋଷ କଣ ?"

"ସେ ବୀର ହେଲେ ସୁଦ୍ଧା ମୁଁ ତାଙ୍କୁ ହୃଦୟରେ ସ୍ଥାନ ଦେବି କାହିଁକି ?"

"ଦାସୀ ଯେତେ ନୀଚ ହେଲେ ବି ସବୁ ବୁଝିପାରେ ଯେ ! ଏ କେତେଦିନ ଏଠାରେ ରହି ମୁଁ କଣ ତୁମ ଗତିବିଧି ଦେଖୁନାହିଁ ? ପୃଥ୍ୱୀ ସିଂହଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ତୁମ ମୁହଁର ଭଙ୍ଗୀ ଦେଖିଛି ଯେ । ମୁଁ ଭଲ କରି ଜାଣେ, ତାଙ୍କ ପ୍ରତି ତୁମର ଆଉ ବିରାଗ ନାହିଁ ।"

"ବିରାଗ ନ ଥିଲେ ଯେ ଅନୁରାଗ ଅଛି, ଏ କଥା କିଏ କହିଲା ?"

"ଅନ୍ତତଃ ଏ ସ୍ଥଳରେ ବିରାଗ ନ ଥିଲେ ଅନୁରାଗ ଅଛିବୋଲି ଭାବିବାକୁ ହେବ, ଆଉ ବୃଥାରେ କାହିଁକି ଡେରି କରୁଛ ? ଉଭୟ କୁଳର ହିତ ହେଉଛି ସିନା, ତୁମେ ଯଦି ପୃଥ୍ୱୀ ସିଂହଙ୍କୁ ପତିତ୍ୱରେ ବରଣକର, ସବୁଗୋଳ ମେଣ୍ଟିଯିବ । ଆଉ ନିରର୍ଥକ ଲୋକ କ୍ଷୟ ହେବନାହିଁ ।"

"ପିତାଙ୍କ ଶତ୍ରୁକୁ, ଜାତିର ଶତ୍ରୁକୁ ମୁଁ କେବେ ହୃଦୟ ଦେବି ନାହିଁ । ଯଦି ପିତା ଯୁଦ୍ଧରେ ଜୟଲାଭ କରି ମତେ ଉଦ୍ଧାର କରନ୍ତି —"

"କିନ୍ତୁ ଯଦି ଯୁଦ୍ଧରେ ପୃଥ୍ୱୀ ସିଂହଙ୍କ ମୃତ୍ୟୁ ହୁଏ, ତାହାହେଲେ ତୁମକୁ ଆଜୀବନ ବୈଧବ୍ୟ ଭୋଗିବାକୁ ପଡ଼ିବ ।"

"ଅଦ୍ୟାଏ ମୁଁ ଅବିବାହିତା । କାହାର ମୃତ୍ୟୁରେ ମୋର କିଛି ଯାଏ ଆସେ ନାହିଁ । ବରଂ— "

"ତାହାହେଲେ ଜୀବନଯାକ କୁମାରୀ ହୋଇ ରହିବ ? "

"ଫେରେ ସେହିକଥା ! ଯୁଦ୍ଧରେ କାହିଁକି କିଏ ମରିବ ? ଯୁଦ୍ଧରେ ଶତ୍ରୁ ନ ମଲେ କ'ଣ ଜୟଲାଭ ହୁଏ ନାହିଁ ? ଯଦି ଦୁର୍ଗାଧୀଶଙ୍କ ପରାସ୍ତକରି ପିତା ମୋତେ ଉଦ୍ଧାର କରନ୍ତି, ତାହାହେଲେ ତାଙ୍କ ଇଚ୍ଛା ଅନୁସାରେ ମୋର ବିବାହ ହେବ । ହିନ୍ଦୁର ବିବାହରେ ବର କନ୍ୟାର ସ୍ୱାଧୀନ ମତ ନାହିଁ । ପିତା ସତ୍ପାତ୍ର ଦେଖି କନ୍ୟାର ବିବାହ ଦେବେ । ଯୌବନରେ ମନୁଷ୍ୟର ମନର ଗତି ଜଳଧାରା ପ୍ରାୟ, ପିତା ଯାହା କରିବେ— "

"ପିତା ଯଦି ପୃଥ୍ୱୀ ସିଂହଙ୍କ ସଙ୍ଗେ ତୁମ୍ଭର ବିବାହ ନ ଦିଅନ୍ତି ।"

"ସେ କଥା ଥାଉ । ଯୁଦ୍ଧର ଖବର କହ । ଯୁଦ୍ଧ ପାଇଁ ମୋ ମନ ଧାଣ୍ଡି ହେଉଛି । ପାଞ୍ଚମାସ କାଳ ଯୁଦ୍ଧ ଲାଗିଲାଣି । ମରହଟ୍ଟାମାନଙ୍କ ପକ୍ଷରୁ କେତେକ ବୀର ଧରାଶାୟୀ ହେଲେଣି । ନିଜ ଜାତିର ଏପରି ଦୁରବସ୍ଥା ଦେଖି କିଏ ସହି ପାରିବ ? ମୋର ଇଚ୍ଛା, ମୁଁ ନିଜେ ଯାଇ ଯୁଦ୍ଧ କରନ୍ତି ।"

"କିନ୍ତୁ ପୃଥ୍ୱୀ ସିଂହ ଛାଡ଼ି ଦେବେ କି ? "

'ସେ ମୁକ୍ତି ଦେଲେ ସୁଦ୍ଧା ମୁଁ ଯିବିନାହିଁ । ପିତା ନିଜେ ଆସି ଉଦ୍ଧାର କରିବେ ।"

"ଯଦିକରି ନ ପାରନ୍ତି ?" ଏହାକହି ପୃଥ୍ୱୀ ସିଂହ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ ।

ପୃଥ୍ୱୀ ସିଂହଙ୍କୁ ଏପରି ଅପ୍ରତ୍ୟାଶିତ ଭାବରେ ସେଠାରେ ଉପସ୍ଥିତ ହେବା ଦେଖି ସେମାନେ ଟିକିଏ ଧୁଞ୍ଚିଗଲେ । କିନ୍ତୁ ଆଜି ଆଉ ପୂର୍ବପରି ସେମାନଙ୍କ ସଙ୍କୋଚ ନାହିଁ । ଦୁର୍ଗରେ ଅନେକ ଦିନ ରହି ପୃଥ୍ୱୀ ସିଂହଙ୍କ ସଙ୍ଗେ ସେମାନଙ୍କ ଘନିଷ୍ଠତା ଜନ୍ମିଅଛି ।

ଅରୁଣା ତାଙ୍କ ସଙ୍ଗେ କଥାବାର୍ତ୍ତା କରିବା ପାଇଁ ଆଉ ଲଜ୍ଜ୍ୟାବୋଧ କରୁନାହିଁ । ସେ ଶତ୍ରୁ ସଙ୍ଗେ ମଧ୍ୟ ଶିଷ୍ଟାଚରଣ କରନ୍ତି । ତାଙ୍କ ମଧୁର ଆଳାପରେ ମୁଗ୍ଧ ହୋଇ ଦିନେ ଦିନେ ଅରୁଣା ଅନେକ ବେଳଯାଏ ତାଙ୍କ ସଙ୍ଗେ କଥାବାର୍ତ୍ତା କରେ । ଏଣୁ ତାଙ୍କ କଥା ଶୁଣି ନିର୍ବିକାର ଚିତ୍ତରେ କହିଲା, "ଯଦି ପିତାଙ୍କ ବାହୁରେ ବଳ ନାହିଁ, ଯଦି ମରହଟ୍ଟାଜାତି ହୀନବଳ ହୋଇଗଲାଣି, ତାହାହେଲେ ମୁଁ ମୁକ୍ତି ପାଇ ପାରିବି ନାହିଁ । କିନ୍ତୁ ଏଠାରେ ଆଉ ଆପଣ ମୋତେ ଦେଖି ପାରିବେ ନାହିଁ । ହିନ୍ଦୁରମଣୀ ନିକଟରେ ସବୁବେଳେ ବିଷଥାଏ । "

"ନା, ମୁଁ ଆଉ ରଘୁନାଥ ରାଓଙ୍କ ସଙ୍ଗେ ଯୁଦ୍ଧ କରିବି ନାହିଁ । ତାଙ୍କୁ ଯଥେଷ୍ଟ କଷ୍ଟ ଦେଇ ସାରିଛି । ତୁମ୍ଭଙ୍କୁ ନେଇ ତାଙ୍କ ହସ୍ତରେ ସମର୍ପଣ କରି ଆସିବି । ପରେ ଯଦି ଯୁଦ୍ଧ ହୁଏ ଦେଖାଯିବ । "

"ଆପଣ ଯଦି ପରାଜୟ ସ୍ୱୀକାର କରନ୍ତି, ତାହାହେଲେ ମୁଁ ଦୁର୍ଗରୁ ଯିବି । ସ୍ୱଜାତିର ମୁଖରେ କଳଙ୍କ ଲେପି ମୁଁ ସ୍ୱାଧୀନତା ପାଇବାକୁ ଚାହେଁ ନା । "

"ଧନ୍ୟ ମରହଟ୍ଟା ରମଣୀ, ଆଜି ତୁମ୍ଭ ନିକଟରେ ମୁଁ ପରାଜୟ ସ୍ୱୀକାର କରୁଛି । ପୂର୍ବ ଜନ୍ମର ସୁକୃତି ବଳରେ ତେଜସ୍ୱିନୀ ରମଣୀଙ୍କ ସଙ୍ଗେ ମୋର ସାକ୍ଷାତ୍କାର ହୋଇଛି, କିନ୍ତୁ ରଘୁନାଥ ରାଓଙ୍କ ବିରୁଦ୍ଧରେ ମୋର ଖଡ଼୍‌ଗ ସର୍ବଦା ନିଷ୍କୋଷିତ । ଏ ଦେହରେ ପ୍ରାଣ ଥିବାଯାଏ ମୁଁ କଦାପି ତାଙ୍କ ସମକ୍ଷରେ ନତମସ୍ତକ ହେବି ନାହିଁ । ଜୟ ପରାଜୟ ଈଶ୍ୱରଙ୍କ ଇଚ୍ଛାଧୀନ—ମୁଁ ଯୁଦ୍ଧ କରିବି । ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରି ମା' ସମଲେଶ୍ୱରୀଙ୍କ ବିଜୟ ପତାକା ଦାଇ ପାହାଡ଼ର ଶିଖର-ଦେଶରେ ଉଡ଼ାଇବି । ଏଇଟା ଓଡ଼ିଆଜାତିର ପଣ । "

ପୃଥ୍ୱୀ ସିଂହଙ୍କ କଥା ଶୁଣି ଅରୁଣା ନିର୍ବାକ୍, ନିଷ୍ପନ୍ଦ ଭାବରେ ତାଙ୍କ ମୁଖକୁ ଅନାଇଲା । ପୃଥ୍ୱୀ ସିଂହଙ୍କ ମୁଖ ବର୍ତ୍ତମାନ ତେଜୋମୟ, ଅରୁଣା ଅନେକ ଥର ଯୁଦ୍ଧକ୍ଷେତ୍ରକୁ ଯାଇଥିଲା, ଅନେକ ବୀର ଦେଖିଥିଲା; କିନ୍ତୁ ଏପରି ତେଜ, ଏପରି ଉଦାରତା ସେ କୌଣସିଠାରେ ଦେଖି ନ ଥିଲା । ଦୁର୍ଗକୁ ଆସିଲା ଦିନୁ ସେ ସମ୍ବଲପୁରକୁ ତୀର୍ଥକ୍ଷେତ୍ର ମଣି 'ମା' ସମଲେଶ୍ୱରୀଙ୍କ ଚରଣ ପ୍ରାନ୍ତରେ ଆନ୍ତରିକ ଭକ୍ତି ଅର୍ପଣ କରୁଥିଲା । ସମ୍ବଲପୁରର ଜଳରେ, ସମ୍ବଲପୁରର ପବନରେ, ପର୍ବତରେ, ନଦୀରେ, ବୃକ୍ଷରେ ସେ ଗୋଟିଏ ସ୍ୱର୍ଗୀୟ ଦୃଶ୍ୟର ସତ୍ତା ଅନୁଭବ କରି ମୁଗ୍ଧ ହୋଇଥିଲା । ପର୍ବତମୟ ମହାରାଷ୍ଟ୍ର ଦେଶରେ ସୁଦ୍ଧା ସେ ଏ ଦୃଶ୍ୟ ଦେଖି ନାହିଁ । ହାୟ, ମା' ସମ୍ବଲପୁର ! ଆଜି ସେ ଗୌରବ କାହିଁ ! ସେ ବୀରତ୍ୱ କାହିଁ !

ଅରୁଣାକୁ ନିରୁତ୍ତର ଦେଖି ପୃଥ୍ୱୀ ସିଂହ ପୁନର୍ବାର କହିଲେ, "କହ, ସେନାପତି-ନନ୍ଦିନୀ, ଯଦି ଦୁର୍ଗରେ ରହିବାକୁ ତୁମ୍ଭର କଷ୍ଟ ହେଉଥାଏ ତାହାହେଲେ ଏହି ମୁହୂର୍ତ୍ତରେ ତୁମ୍ଭଙ୍କୁ ପିତୃ ସମୀପରେ ଛାଡ଼ି ଆସିବି ।"

"ନା, ଦୁର୍ଗରେ ମୁଁ ଅତି ସୁଖରେ ଅଛି । ପିତୃ ଶିବିରକୁ ଯିବି ନାହିଁ ।"

"ମୁଁ ଶୁଣିଛି, ତୁମ୍ଭେ ପିତାଙ୍କ ସଙ୍ଗେ ଯୁଦ୍ଧ କ୍ଷେତ୍ରକୁ ଯାଅ । ଯୁଦ୍ଧର ନାମ ଶୁଣିଲେ ତୁମ ହୃଦୟ ଉତ୍ସାହରେ ନାଚିଉଠେ । ଏଥର ମୋ ସଙ୍ଗେ ତୁମକୁ ଯୁଦ୍ଧ କ୍ଷେତ୍ରକୁ ଯିବାକୁ ହେବ । ଯୁଦ୍ଧ କ୍ଷେତ୍ରରେ ତୁମର ରଣ-ରଙ୍ଗିଣୀ ମୂର୍ତ୍ତି ଦେଖି ସୈନିକମାନେ ଅପୂର୍ବ ଉତ୍ସାହରେ ମାତି ଯୁଦ୍ଧ କରିବେ ।"

"ଦୁର୍ଗାଧିପଙ୍କ ଯେପରି ଅଭିରୁଚି । ବୀର ପୁରୁଷଙ୍କ ସମର-ସଙ୍ଗିନୀ ହେବା ସୌଭାଗ୍ୟର କଥା । ବୀର ପୁରୁଷଙ୍କ ସଙ୍ଗେ ରହି ଯୁଦ୍ଧ

ଦେଖିବ—ଯୁଦ୍ଧ ଦେଖି ନୟନ ସାର୍ଥକ କରିବ, ଏଥିରୁ ବଳି ଆଉ ସୁଖ କଣ ହୋଇପାରେ ? ”

“ଶୁଣି ସୁଖୀ ହେଲି, ଅରୁଣା-ମୂର୍ତ୍ତି ପ୍ରାଚୀଦିଗରେ ଅରୁଣରୂପେ ଉଦିତ ନ ହେବାଯାଏ ଏ ଯୁଦ୍ଧର ଅବସାନ ହେବନାହିଁ । ”

ଏହା କହି ଉପସ୍ଥିତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ସକାଶେ ପୃଥ୍ୱୀସିଂହ ପ୍ରକୋଷ୍ଠରୁ ବହିର୍ଗତ ହେଲେ । ଅରୁଣା ସ୍ଥିର ନେତ୍ରରେ ତାଙ୍କ ବୀର ମୂର୍ତ୍ତି ଦେଖି ମନ ମଧ୍ୟରେ ତାଙ୍କୁ ଶତବାର ଧନ୍ୟବାଦ ଦେଲା । ପୃଥ୍ୱୀସିଂହଙ୍କ ସଙ୍ଗେ କଥାବାର୍ତ୍ତା କରୁଥିବାଯାଏ ସେ ନୟନ-ସମକ୍ଷରେ ସ୍ୱର୍ଗର ଦୃଶ୍ୟ ଦେଖୁଥିଲା ! ପୃଥ୍ୱୀସିଂହ ଅଦୃଶ୍ୟ ହୁଅନ୍ତେ ତାହାର ହୃଦୟ ବ୍ୟାକୁଳ ହୋଇ ପଡ଼ିଲା । ସେ ନୀରବରେ ବାତାୟନ ସମୀପକୁ ଯାଇ ବାହାରରେ ପ୍ରକୃତିର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲା ।

## ଚତୁର୍ଥ ପରିଚ୍ଛେଦ

### — ମିଳନ —

*"Till pride be quelled and love be free"*—
Scott.

ଆଜି ରଘୁଜୀ ଦ୍ୱିତୀୟ ନିଜେ ସୈନିକମାନଙ୍କୁ ସଙ୍ଗରେ ନେଇ ଯୁଦ୍ଧ-କ୍ଷେତ୍ରକୁ ଆସିଛନ୍ତି । ତାହାଙ୍କର ଏକମାତ୍ର ଲକ୍ଷ୍ୟ—“ମନ୍ତ୍ରର ସାଧନ ଅବା ଶରୀର ପାତନ ।” ଏଥର ସେ ଶତ୍ରୁକୁ ପରାସ୍ତ କରିବେ, ଅଥବା ନିଜ ରକ୍ତରେ ସମର ପ୍ରାଙ୍ଗଣକୁ ପ୍ଲାବିତ କରି ସମରଶଯ୍ୟାରେ ଶୋଇବେ । ଜୀବନ ପ୍ରତି ଆଉ ତାଙ୍କର ମମତା ନାହିଁ । ମରହଟ୍ଟା ଜାତିକୁ ଓଡ଼ିଆମାନଙ୍କ ହସ୍ତରେ ଅପମାନିତ ଦେଖି ସେ କିପରି ପିଣ୍ଡରେ ପ୍ରାଣ ଧରିବେ ? ସ୍ୱଜାତିର ମାନରକ୍ଷା କରିବା

ସକାଶେ ଏଥର ସେ ଯୁଦ୍ଧକୁ ବାହାରିଛନ୍ତି । ପ୍ରାଣପ୍ରତିମା ଅରୁଣା ଶତ୍ରୁ-ଦୁର୍ଗରେ ବନ୍ଦିନୀ ! ମରହଟ୍ଟା ଜାତିର ଗୌରବ ଲକ୍ଷ୍ମୀ ଶତ୍ରୁର ପଦଦଳିତା । ଆଜି ସେ ପ୍ରାଣର ବିନିମୟରେ ସ୍ୱଜାତିର ମାନ ରଖିବେ । ଯୁଦ୍ଧ କ୍ଷେତ୍ରରେ ଦେଖିବେ, ଓଡ଼ିଆଜାତି କିପରି ଯୁଦ୍ଧ କରିପାରେ ।

ରଘୁଜି ଭୋଁସଲେ ନିଜର ବିରାଟ ବାହିନୀକୁ ବହୁ ଭାଗରେ ବିଭକ୍ତ କରି ନାନା ଦିଗକୁ ସୈନ୍ୟ ପଠାଇଲେ । ତାଙ୍କ ଇଚ୍ଛା, ଦୁର୍ଗକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଶତ୍ରୁର ବଳ ପରୀକ୍ଷା କରିବେ । ଏଣୁକରି ସେ ସୈନିକମାନଙ୍କୁ ବିଭିନ୍ନ ଦିଗକୁ ପ୍ରେରଣ କଲେ । ନିଜେ ପ୍ରାୟ ବିଂଶତି ସହସ୍ର ଅଶ୍ୱାରୋହୀ ସୈନିକ ନେଇ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ମରହଟ୍ଟାମାନଙ୍କ "ବମ୍ ବମ୍ ମହାଦେଓ" ରବରେ ସିଂଘୋର ଗିରିସଙ୍କଟ ବିକମ୍ପିତ ହେବାକୁ ଲାଗିଲା । ସେମାନଙ୍କ ତେଜରେ ଚତୁର୍ଦ୍ଦିଗ ବିଭାସିତ ହୋଇଗଲା ।

ପୃଥ୍ୱୀ ସିଂହ ଅଲକ୍ଷିତ ଭାବରେ ଥାଇ ମରହଟ୍ଟାମାନଙ୍କ ଗତିବିଧି ନିରୀକ୍ଷଣ କରୁଥିଲେ । ରଘୁଜି ଭୋଁସଲେଙ୍କ ଉଦ୍ୟମ ଦେଖି ସେ ପୂର୍ବବତ୍ ପର୍ବତର ସ୍ଥାନେ ସ୍ଥାନେ ସୈନିକମାନଙ୍କୁ ପ୍ରଚ୍ଛନ୍ନ ଭାବରେ ରଖିଲେ ଏବଂ ନିଜେ ଅଳ୍ପ ସଂଖ୍ୟକ ସୈନିକ ନେଇ ପର୍ବତର ଚତୁର୍ଦ୍ଦିଗରେ ପରିଭ୍ରମଣ କରିବାକୁ ଲାଗିଲେ । ଓଡ଼ିଆ ସୈନିକମାନେ ଲୁକ୍କାୟିତ ଭାବରେ ଥାଇ ଅପ୍ରତ୍ୟାଶିତ-ଭାବରେ ମରହଟ୍ଟାମାନଙ୍କୁ ଆକ୍ରମଣ କରନ୍ତି ଏବଂ ସେମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରି ପଛକୁ ଘୁଞ୍ଚାଇ ଦିଅନ୍ତି । ଏପରି ବାରମ୍ବାର ଆକ୍ରାନ୍ତ ହୋଇ ଚତୁର୍ଦ୍ଦିଗକୁ ପ୍ରେରିତ ମରହଟ୍ଟାମାନେ ହତାହତ ହେବାକୁ ଲାଗିଲେ । ସେମାନଙ୍କ ସକଳ ଆଶା ଭରସା ବିଲୁପ୍ତ ହେଲା । ଜୟ-ଶ୍ରୀ ସେମାନଙ୍କୁ ଛାଡ଼ି ବହୁଦୂରକୁ ଚାଲିଗଲା ।

କିନ୍ତୁ ରଘୁଜି ରାଓଙ୍କ ସେଥିପ୍ରତି ଲକ୍ଷ୍ୟନାହିଁ । ଆଜି ତାଙ୍କ ଜୀବନ ମାୟା-ମମତା-ବିହୀନ । କିର୍ବାସିତ ବିଜୟ ଲକ୍ଷ୍ମୀଙ୍କୁ ଶତ୍ରୁର କବଳ କବଳରୁ ମୁକ୍ତକରି ଆଣିବା ନିମନ୍ତେ ସେ ପ୍ରାଣସୁଦ୍ଧା ଦେବାକୁ ପଶ୍ଚାତ୍‌ପଦ ନୁହନ୍ତି । ପରାଜିତ, ଅପମାନିତ ଜୀବନ ଘେନି ସେ କଦାପି ପ୍ରତ୍ୟାବୃତ୍ତ ହେବେ ନାହିଁ । ଏଥିପାଇଁ ସେ ନିର୍ଭୀକ ଭାବରେ ଗନ୍ତବ୍ୟ ପଥରେ ଅଗ୍ରସର ।

ବହୁ ସାବଧାନତା ସହକାରେ ରଘୁଜି ରାଓ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ସେ ଏପରି ସତର୍କ ଭାବରେ ଗିବାକୁ ଲାଗିଲେ ଯେ, ପୃଥ୍ୱୀ ସିଂହ ତାଙ୍କ ଗତି ଆଦୌ ଲକ୍ଷ୍ୟକରି ପାରିଲେ ନାହିଁ । ରଘୁଜି ରାଓ ଅବାଧରେ ଗିରିସଙ୍କଟ ଉତ୍ତୀର୍ଣ୍ଣହୋଇ ଗିରିଦୁର୍ଗ ନିକଟରେ ଉପନୀତ ହେଲେ । ପୃଥ୍ୱୀ ସିଂହ ବର୍ତ୍ତମାନ ଦେଖିଲେ ଯେ, ବିଷମ ସମସ୍ୟା ଉପସ୍ଥିତ । କିନ୍ତୁ ତଥାପି ତାଙ୍କ ମନ ନିର୍ଭୀକ ଓ ଅଟଳ । ରଘୁଜି ରାଓଙ୍କୁ ନିକଟବର୍ତ୍ତୀ ଦେଖି ସେ ବିପୁଳ ଆୟୋଜନରେ ତତ୍ପର ହେଲେ । ଦୁର୍ଗ-ପ୍ରାଚୀରରେ ପୂର୍ବବତ୍ ବହୁ ପ୍ରସ୍ତର ଲତା-ଗ୍ରଥିତ ହୋଇ ଝୁଲିଗଲା । ସମଗ୍ର ଓଡ଼ିଆ-ସେନା ଏକତ୍ରିତ ହୋଇ ଦୁର୍ଗ ମଧ୍ୟରେ ଅବସ୍ଥାନ କଲେ ।

ଦୁର୍ଗ ନିକଟକୁ ଯାଇ ମରହଟ୍ଟାମାନେ ଅବିଶ୍ରାନ୍ତ ଗୋଳା-ବର୍ଷଣ କରିବାକୁ ଲାଗିଲେ । ସେମାନଙ୍କ 'ବମ୍ ବମ୍ ମହାଦେଓ' ରବରେ ଦୁର୍ଗବାସୀମାନେ ଶଙ୍କା ପାଇବାକୁ ଲାଗିଲେ । କିନ୍ତୁ ପୃଥ୍ୱୀ ସିଂହ ନିଃଶଙ୍କ ଓ ସତର୍କ । ସେ କୌଶଳରେ ସୈନିକମାନଙ୍କୁ ଦୁର୍ଗ ପ୍ରାଚୀର ଉପରେ ସନ୍ନିବିଷ୍ଟ କଲେ । ମରହଟ୍ଟାମାନଙ୍କ ଗୋଳା ବର୍ଷଣରେ ବହୁସଂଖ୍ୟକ ବୀର ଧରାଶାୟୀ ହେଲେ; କିନ୍ତୁ ଓଡ଼ିଆମାନଙ୍କ ଜୀବନପ୍ରତି ଭ୍ରୂକ୍ଷେପ ନାହିଁ । ସେମାନେ "ଜୟ ସମଲେଈର ଜୟ" ରବକରି ଲତା-ଗ୍ରଥିତ ପ୍ରସ୍ତର ସବୁ ମରହଟ୍ଟାମାନଙ୍କ ଉପରେ

ନିକ୍ଷେପ କରିବାକୁ ଲାଗିଲେ । ସେ ପ୍ରସ୍ତରର ଆଘାତ ମରହଟ୍ଟାମାନେ ସମ୍ଭାଳି ପାରିଲେ ନାହିଁ । ଯୁଦ୍ଧରୁ ପଛଘୁଞ୍ଚା ଦେଇ ପ୍ରାଣ ଭୟରେ ପଳାଇବାକୁ ଲାଗିଲେ । ଓଡ଼ିଆମାନେ ପ୍ରାଚୀର ଡେଇଁ "ଜୟ ସମଲେଇର ଜୟ" ରବ କରି ସେମାନଙ୍କ ପଶ୍ଚାଦ୍ଧାବନ କଲେ ।

ପର୍ବତ ଉପରେ ଓଡ଼ିଆ ଓ ମରହଟ୍ଟାମାନଙ୍କ ମଧ୍ୟରେ ଭୀଷଣ ସମ୍ମୁଖ-ସଂଗ୍ରାମ ଆରମ୍ଭ ହେଲା । ଉଭୟ ପକ୍ଷରୁ ଅନେକ ହତାହତ ହେଲେ; କିନ୍ତୁ ମରହଟ୍ଟାମାନଙ୍କ ଆଉ ଉତ୍ସାହ ନାହିଁ । ସେମାନଙ୍କୁ ଅଗତ୍ୟା ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ।

ପୃଥ୍ୱୀ ସିଂହ ଶତ୍ରୁବ୍ୟୂହରେ ପ୍ରବେଶ କରି ଭୟଙ୍କର ଯୁଦ୍ଧ ଆରମ୍ଭ କଲେ । ତାଙ୍କ ଅଦମ୍ୟ ପରାକ୍ରମରେ ମରହଟ୍ଟାବାହିନୀ ଛିନ୍ନ-ବିଛିନ୍ନ ହୋଇଗଲା । ତାଙ୍କ ବୀର୍ଯ୍ୟ ସମକ୍ଷରେ ସ୍ୱୟଂ ରଘୁଜୀ ରାଓଙ୍କ ଉତ୍ସାହ ମଧ୍ୟ ନତ ମସ୍ତକ ହେଲା । * ପୃଥ୍ୱୀ ସିଂହ ତରବାରି

---

* Akbar Raya, the minister of Abhaya Singh, thinking this a good opportunity to strengthen the Sambalpur fort, caused the boatmen to scuttle the boats in deep water, so that the guns all sunk, and many Marhatta artillery-men were drowned. He then recovered eight of the guns and mounted them on the fort. The Raja of Nagpura sent a strong detachment to avenge the insult and recover the guns; but it was repulsed with slaughter."

P. 23. Bengal District Gazetteer.

*( Sambalpur )*

ଉତ୍ତୋଳନ କରି ତାଙ୍କ ପ୍ରତି ସିଂହ-ବିକ୍ରମରେ ଧାବମାନ ହୁଅନ୍ତେ, ପଛରୁ କିଏ ତାଙ୍କ ହସ୍ତକୁ ଦୃଢ଼ ଭାବରେ ମୁଷ୍ଟିବଦ୍ଧ କଲା । ପୃଥ୍ୱୀ ସିଂହ ପଛକୁ ଅନାଇ ଦେଖିଲେ ଯେ, ଜଣେ ପ୍ରହରଣ-ଧାରିଣୀ ମୁକ୍ତକେଶା ରମଣୀ-ମୂର୍ତ୍ତି ତାଙ୍କ ପଶ୍ଚାତ୍‌ଭାଗରେ ଦଣ୍ଡାୟମାନ । ତାହାର ସେ ରୂପ, ସେ ତେଜ ଦେଖି ତାଙ୍କ ହସ୍ତ ଆଉ ଅଗ୍ରସର ହୋଇ ପାରିଲା ନାହିଁ । ସେ ନୀରବ ଓ ନିଷ୍ପନ୍ଦ ଭାବରେ ଛିଡ଼ା ହୋଇ ଉକ୍ତ ରମଣୀ-ମୂର୍ତ୍ତିକୁ ଦେଖିବାକୁ ଲାଗିଲେ । ରଘୁଜି ରାଓ ମଧ୍ୟ ତାଙ୍କ ଜୀବନ-ରକ୍ଷା-କାରିଣୀକୁ ଦେଖି ବିସ୍ମୟାଭିଭୂତ ହୋଇଗଲେ । ତାଙ୍କ ମୁଖରୁ ବାକ୍ୟ ନିଃସୃତ ହୋଇ ପାରିଲା ନାହିଁ । ଉକ୍ତ ରମଣୀ ପୃଥ୍ୱୀ ସିଂହଙ୍କୁ କହିଲା "ଧନ୍ୟ ବୀର ! ଏ ଅଦ୍ଭୁତ ସାହସ ଏଥର ମୁଁ ପ୍ରଥମ ଦେଖିଲି । କିନ୍ତୁ ହେଲା । ଆଉ ନାହିଁ । ଯଥେଷ୍ଟ ହୋଇ ସାରିଛି । ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ । ପିତାଙ୍କୁ ମୁକ୍ତ ଦିଅନ୍ତୁ ।" ପରେ ରଘୁଜି ରାଓଙ୍କ ନିକଟକୁ ଯାଇ କହିଲା, "ପିତା, ଦାସୀର ଅପରାଧ କ୍ଷମା କରନ୍ତୁ । ଦାସୀ ଆପଣଙ୍କୁ ଅନେକ କଷ୍ଟ ଦେଇଛି, ଦାସୀ ପାଇଁ ମରହଟ୍ଟା ଜାତିକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଛି । କିନ୍ତୁ ଏ ବୀର ପୁରୁଷ —" ସେ ଆଉ କହି ପାରିଲା ନାହିଁ । ତାର ବାକ୍‌ଶକ୍ତି ରୁଦ୍ଧ ହୋଇଗଲା ଓ ଲଜ୍ଜାରେ ମୁଖ ଲାଲ୍ ହୋଇଗଲା ।

ଏ ଗୌରବମୟ ଦୃଶ୍ୟ ଦେଖି ରଘୁଜିଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା । ସେ ଦୁହିତାକୁ ଆଲିଙ୍ଗନ କରି କହିଲେ "ଅରୁଣା ! ମା !" ଆଉ କହି ପାରିଲେ ନାହିଁ । ତାଙ୍କ ଚକ୍ଷୁରୁ ଅବିରଳ ସ୍ନେହାଶ୍ରୁ ନିର୍ଗତ ହେବାକୁ ଲାଗିଲା । ପରେ ଆତ୍ମସମ୍ବରଣ କରି ଅରୁଣାର ମୁଖର ଭାବ ଦେଖି ସେ ସବୁ ବୁଝି ପାରିଲେ । ଅରୁଣାର ହସ୍ତ ଧରି ପୃଥ୍ୱୀ ସିଂହଙ୍କ ନିକଟକୁ ଯାଇ କହିଲେ, "ବୀର ଶ୍ରେଷ୍ଠ,

ତୁମ୍ଭର ବୀର୍ଯ୍ୟରେ ମୁଁ ମୁଗ୍ଧ ହୋଇଛି । ମୁଁ ତୁମ୍ଭର ଶତ୍ରୁ—ଯୁଦ୍ଧରେ ପରାସ୍ତ । ତଥାପି ତୁମ୍ଭର ବୀର୍ଯ୍ୟ ଦେଖି ତୁମ୍ଭପ୍ରତି ମୋର ଆନ୍ତରିକ ଶ୍ରଦ୍ଧା ଜାତହୋଇଛି । ଏ ଶ୍ରଦ୍ଧାର ପୁରସ୍କାର ସ୍ୱରୂପ ମୋର ପ୍ରାଣର ପ୍ରାଣ ଅରୁଣାକୁ ତୁମ ହସ୍ତରେ ସମର୍ପଣ କଲି । ବୀର-କନ୍ୟା ବୀର-ପତ୍ନୀ ହେଉ ।" ଏହା କହି ସେ ପୃଥ୍ୱୀ ସିଂହଙ୍କ ହସ୍ତରେ ଅରୁଣାର ହସ୍ତ ସଂସ୍ଥାପିତ କଲେ । ଉଭୟ ପକ୍ଷରୁ "ବମ୍ ବମ୍ ମହାଦେଓ" ଓ "ଜୟ ସମଲାଇର ଜୟ" ରବ ଉଠି ସେ ନୀରବ ଅରଣ୍ୟକୁ ପ୍ରତିଧ୍ୱନିତ କଲା । ପୃଥ୍ୱୀ ସିଂହ ନତ ମସ୍ତକ ହୋଇ ଏ ସବୁ ଶ୍ରବଣ କଲେ ଏବଂ ସୈନିକମାନଙ୍କୁ ସଙ୍ଗରେ ନେଇ "ବମ୍ ବମ୍ ମହାଦେଓ" ରବ କରି ଅରଣ୍ୟ ମଧ୍ୟରେ ବିଲୀନ ହୋଇଗଲେ ।



[ 'ମୁକୁର' ୯ମ ବର୍ଷ ୫ମ ସଂଖ୍ୟା ଭାଦ୍ର ୧୩୨୨ ଅଗଷ୍ଟ ୧୯୧୪ ]

ଉପେନ୍ଦ୍ର କିଶୋର ଦାସ

# ଡାହାଣୀ ଆଲୁଅ

( ଏକ )

**ପୁଣି** ବର୍ଷା ହେଲା । ପବନ-ପହୁଡ଼ା ତାଳଗଛ ମଥାନ ଉପରେ ଚଉଦ-ମେଲଣିର ଯୋଡ଼ି-ନାଗରା ବଜାଇ ।

ରାତି ଅନ୍ଧାର-ହଜା ନିଶବଦ ବଣଭୂଇଁ ଛାତିରେ, ଭଙ୍ଗା ମାଟି ଘରଟିଏ, ବର୍ଷା କାକର ଦାଉରେ ଛଣି ଛପରତକ ତାର କେଉଁ କାଳୁ କୁଆଡ଼େ ଉଡ଼ିଗଲାଣି । କଣ୍ଟା-ବଣ ଭିତରେ, ଖାଲି ଗୋଟାଏ ଉଈ ଡିହ, ଆଉ ଦଦରା କାନ୍ଥ କେତେପଟ । ବତାସ ଦାଉରେ ସେତକ ବି ଏଇଲାଗେ ପଡ଼ିଯିବ ସତେ କି ?

ଘଡ଼ିକ ପରେ ବର୍ଷା ଥମ୍ବି ଆସିଲା । ଅଙ୍ଗାରବୋଳା ରଙ୍ଗ-ଦେହରେ ବିଜୁଳି ଝକ୍‌ମକ୍ ମାରି ବତାସ ଝପଟିଗଲା ଗଜା-ଧାନ କ୍ଷେତ ମେଳରେ ଚହଲ ପକାଇ ଦେଇ ।

ଘର ପଛପଟ ହଙ୍କା ବରଗଛ ଭିତରୁ ଜାଅନ୍ତା ଅନ୍ଧାର ଖଣ୍ଡିକ ପରି ଗୋଟାଏ ବାଦୁଡ଼ି ଉଡ଼ି ଆସି ଆଉ ଗୋଟାଏ ଗଛରେ ବସିଲା । ଡେଣା ଝାପଟରେ ତା'ର ଗଛ ତଳେ ଟପ ଟପ ହୋଇ ବର୍ଷା ହୋଇଗଲା ଆଉ ଥରେ । ବିଲ ଗହୀର ଆର ପାଖେ ମଶାଣି-ପଡ଼ିଆରେ ସେତିକିବେଳେ ଗୋଟାଏ ବଡ଼ ଅଲୁଅ ମସାଲ ପରି ଦାଉ ଦାଉ ହୋଇ ଜଳି ଉଠି ସେହି ବରଗଛ ତଳଯାଏ ଆସିଲା । ତା'ପରେ ହଠାତ୍ ଲିଭିଗଲା ।

ଗଛ ଉପରେ ବାଦୁଡ଼ିଟା ଚମକି ପଡ଼ି କହିଲା, କିଏ ?

ପଡ଼ିକେ ଅଲୁଅଟା ପୁଣି ଜଳି ଉଠିଲା ଦାଉ ଦାଉ ହୋଇ । କହିଲା, ମୁଇ —

"କିଏ ? ମୁଁ ତ ଚିହ୍ନି ନାହିଁ !"

ଚିହ୍ନି ନାହିଁ ? ଅଲୁଅ ହସିଲା; ଏଇ ଘର ପାଖରେ ବର ଗଛରେ ଅଛୁଟି ? ଅନେକ ଦିନ ଆଗେ ଏ ଘରେ କିଏ ଥିଲା ଜାଣିନାହିଁ କିଛୁ ?

ନାଁ, ଗୁରୁମାସ ହେଲା ଜମା ମୁଁ ଏଠିକି ଆସିଚି ।

ଗୁରୁମାସ ମୋଟେ ? ତେବେ ଆଉ ଜାଣିବୁ କୁଆଡ଼ୁ ? ସେ ତେର ଦିନର କଥା । ବୋଧହୁଏ ତିନି କି ଗୁରିବର୍ଷ ହେଲଣି । ଏ ଘରେ ସେତେବେଳେ ଥିଲୁ ମୁଁ ଆଉ ମୋର ସ୍ୱାମୀ । ସଂସାରରେ ଦୁଃଖ କ'ଣ, ଦିନକ ପାଇଁକି ଜାଣି ନ ଥିଲୁ ତାଙ୍କ ଲାଗି । କିନ୍ତୁ ପଡ଼ିକେ କ'ଣ ହୋଇ ଗଲାଟି ! ଅଲୁଅଟା ଥରେ ଥର ଉଠି ମେଞ୍ଚି ମେଞ୍ଚି ହୋଇ ଆସିଲା ।

ପଣ୍ଡେ ଗଲା ।

ପୁଣି କହିଲା, ଅଜିକାଲି ଭାବିଲେ ସ୍ୱପ୍ନପରି ଲାଗେ ସେ କଥା ସବୁ । ଏ ଅବସ୍ଥାରେ ବି ମନ ତ ମନ୍ତ୍ରି ହୋଇଯାଏ କାହିଁରେ ! କିନ୍ତୁ ଥାଉ ସେକଥା । ନୂଆକରି ସେ ଦୁଃଖ ଡାକି ଆଣିବାକୁ ମୋର ଆଉ ମନ ନାହିଁ ।

ବାଦରଟା କେଁ କେଁ ହୋଇ ଗଛ ତଳ ଡାଳକୁ ଆହୁରି ଓହ୍ଲାଇ ଆସିଲା । କହିଲା; ନାହିଁ ଲୁହ, ଲୁହ ସେ କଥା । ଶୁଣିବାକୁ ମୋର ଭାରି ମନ ହଉଚି ।

ଶୁଣିବୁ ? ହଉ ଶୁଣ୍ ତେବେ । ଆଲୁଅ ଆରମ୍ଭକଲା; ତେର ଦିନ କଥା ହୋଇଗଲାଣି । ଏଇକ୍ଷେଣା ଏମିତ କାନ୍ଦୁରା ବଣ ହୋଇ ଯାଇଚି ସିନା, ଏଇ ଘର ଦିନେ ପୁଣି ଲୋକ ଗହଳରେ ଖାଲି ହସୁଥିଲା, ମୁଁ ଯେତେବେଳେ ପ୍ରଥମେ ଏଠିକି ଆସେଁ । ସ୍ୱାମୀମୋର କାହିଁକି କେଜାଣି କଟକରୁ ପଢ଼ା ଛାଡ଼ି ଦେଇ ଘରେ ଆସି ବସିଥିଲେ । ନାମିତ୍ୟଘର ପରେ ଆଉ ସେ କଟକକୁ ଯାଇ ନାହାନ୍ତି । ସେ କଥା, ସେଇ ପ୍ରଥମ ରାତି କଥା ମନରୁ ପାଶୋରି ଯିବ ନାହିଁ କେବେ । ଦୂର ସମ୍ପର୍କର ଜଣେ ନଣନ୍ଦ ହେବେ ସେ; ମତେ ଯେତେବେଳେ ଆଣି ଏଇ ଘରର ଗୋଟାଏ ବଖରା ଭିତରକୁ ପେଲି ଦେଇ ବାହାରୁ କବାଟ କିଳିଦେଲେ । ଘର ଭିତରେ ଗୋଟାଏ କୋଣରେ ପିତଳ ଦୀପଟା ମିଞ୍ଜି ମିଞ୍ଜି ହୋଇ ଜଳୁଚି । ଘର ମଝିରେ ଖଣ୍ଡେ ଅଣଓସାର ଖଟ ଉପରେ ବିଛଣା ପରା । କବାଟ ପାଖେ ଠିଆ ହୋଇ ସରମ ସଙ୍କୋଚରେ ଦେହ ଗୋଟାକ ମୋର ଝାଳରେ ବୁଡ଼ିଗଲା ।

ସ୍ୱାମୀ ଖଟ ଉପରେ ଶୋଇଥିଲେ, କାନ୍ଥ ଆଡ଼କୁ ମୁହଁକରି । ପାଇଜୋଡ଼ା ଝମ ଝମ ଶୁଣି ଫେରି ଚାହିଁଲେ । ତା'ପରେ ଖଟରୁ ଉଠି ଆସି ମୋ ହାତଧରି ଡାକିଲେ; ଆସ ।

ବରଡ଼ାପତ୍ର ପରି ଥରୁଥାଏ ମୋ ହାତ ଦିଟା ତାଙ୍କ ହାତ ଭିତରେ ସେତେବେଳେ । ଦଣ୍ଡେ ଗଲା, ଦୁହେଁଯାକ ଚୁପ୍‌ଚାପ୍ । ହାତକୁ ମୋର ଖୁବ୍ ଜୋରରେ ଚିମୁଟି ଦେଇ ସେ ହସିଲେ, କହିଲେ; ଅହୋ ଲଜ୍ଜାବତୀ ଲତା ! ଦି'ବର୍ଷ ଆଗରୁ ମୋର ଆଗରେ ମଗ ଘୋଡ଼ା ପରି ଡେଇଁଥିଲ ବାପଘରେ ତମେ । ଲାଜ ମାଡ଼ୁ ନାହିଁ ଆଜି ଏତେ ଛାଇ ହେବାକୁ ?

ମନେ ମନେ ହସିଲି । ସତରେତ, ପିଲଟି ଧନ୍ଦୁ ମୁଁ ଦାସ-ଘରେ ବୋଲି ପାଣି ପିଉ ନ ଥିଲି ଯାଙ୍କ ପେଇଁ ! ଏ ପୁଣି ମୋତେ ବାହା ହୋଇ ବସିବେ; ଏ କଥା କିଏ ଜାଣିଥିଲା !

ଟାଣି ଟାଣି ସେ ମତେ ଖଟ ପାଖକୁ ନେଇ ଶୁଆଇ ଦେଲେ, ଓଢ଼ଣା କାଢ଼ି ଦେଇ ମୁହଁକୁ ଦି' ହାତରେ ଟେକି ଧରି ଡାକିଲେ; ରତ୍ନା !

ଜବାବ ଦେଲି ନାହିଁ ଲାଜରେ ।

କଥା କହିବୁ ନାହିଁ ମତେ ? ସେ ପଚାରିଲେ ।

ତଥାପି କିଛି କହିଲି ନାହିଁ ।

ଦଶଟା ବର୍ଷରେ କ'ଣ ଏତେ ପର ହୋଇଗଲି ତୋ ପାଖେ ? କଥା ପଦେ କହିବୁ ନାହିଁ ? ହଉ ତେବେ ମୁଁ ଯାଉଛି । ସେ ଖଟ ଉପରୁ ଉଠିଲେ ଘର ଛାଡ଼ି ଚାଲିଯିବାକୁ । ବାଧ୍ୟ ହୋଇ କହିଲି, କ'ଣ ?

ସୁଖରେ ତାଙ୍କ ମୁହଁ ପୂରି ଉଠିଲା । ଖଟ ଉପରେ ବସି ଦି' ହାତରେ ମତେ ତାଙ୍କ କୋଡ଼ ପାଖକୁ ଟାଣି ନେଇ କହିଲେ; ଦି' ବର୍ଷ ତଳ କଥା ମନେ ପଡ଼ୁଛି ତୋର ରତ୍ନା ? ଖାଇବେଳେ ଧନେ ତମ ଭାଉଜ ଆମ ଦିହିଙ୍କି ଗୋଟାଏ ଘରେ ପୂରାଇ କବାଟ ଲଗାଇ ଦେଇଥିଲେ ଥଟ୍ଟାରେ ଥରେ ? ସେହିଦିନୁ ଜାଣିଲି ତତେ ପାଇବା ଆଶା ଏମିତି ଅସମ୍ଭବ ନୁହେଁ ମୋ ପକ୍ଷରେ । ତା' ଆଗରୁ ତମ ଘରେତ କେହି ରାଜି ହେଉ ନ ଥିଲେ ମୋ ସାଙ୍ଗେ ତତେ ବାହା ଦବାକୁ, ନୁହେଁ ?

ଲାଜ ସଙ୍କୋଚ ଅନେକ କମି ଆସିଥିଲା ତାଙ୍କ କଥାରେ । କହିଲି; ବୋଉର କିନ୍ତୁ ମନ ଥିଲା ଭାରି ।

ମୁଁ ସେ କଥା ବୁଝିଥିଲି । ତା ନୋହିଲେ ଆମ ବୃନ୍ଦାବନ ତୋ ସାଙ୍ଗେ ବାହା ହବା କଥା ଯୋଉ ଦିନ ତମ ବାପା ମତେ କହିଲେ, ତମ ଘରକୁ ଯିବା ସେଇ ଦିନୁ ମୋର ସରି ଯାଇଥାନ୍ତା ।

ସଂସାରରେ କନ୍ୟା ତମକୁ ଅପୂର୍ବ ହୋଇ ନ ଥାନ୍ତେ, ମୁଁ କହିଲି । ସେ ହସିଲେ । କହିଲେ ମିଳିଥାନ୍ତେ ପରା ! କିନ୍ତୁ କାହା ପାଇଁ ଆଜି ଯାଏ ମୁହଁରେ ଧରି ନ ଥିଲି ସେ କଥା ?

ଲଜ୍ଜା ଆଉ ଆନନ୍ଦରେ ଉଲୁସି ଉଠି କହିଲି; ମୁଁ ଜାଣେ । ପାଗଳଙ୍କ ପରି ସେ ମତେ ଛାତି ଉପରେ ଭିଡ଼ି ଧରି କହିଲେ; ମୋ ଭାଗ୍ୟ; ମୋ ଭାଗ୍ୟ ସେ ରତି ! ଜୀବନରେ ସବୁଠୁଁ ବଡ଼ ଗୁହାରି ଭଗବାନ ମୋର ଶୁଣିଛନ୍ତି । ଆଜି, ଏତେ ପାଖରେ ତତେ ପାଇ, ତେବେ ବି କେମିତି ବିଶ୍ୱାସ ହେଉ ନାହିଁ ମୋର, ପାଇଛୁ ବୋଲି !

ମୁହଁ ତାଙ୍କର ଅସ୍ତେ ଅସ୍ତେ ମୋ ଓଠ ପାଖକୁ, ଖୁବ୍ ପାଖକୁ ଲଇଁ ଆସିଲା । ଝିଙ୍କା ବାଟେ ମେଞ୍ଚୁଆ ପବନ ସେତିକିବେଳେ ଘର ଭିତରୁ ଦୀପଟା ଲିଭାଇ ଦେଇ ବାହାରିଗଲା—

( ଦୁଇ )

ଏହିଯାଏ କହି ଆଲୁଅ କ'ଣ ଭାବି ଟିକେ ତୁନି ହେଲା । ଗଛ ଉପରୁ ବାଦୁଡ଼ି ପଚାରିଲା; ହଁ ସେଉଠୁଁ ?

ଆଲୁଅ ପୁଣି ଆରମ୍ଭ କଲା—

ପ୍ରାୟ ବର୍ଷେ ବିତିଗଲା ଏଥି ଭିତରେ । କିନ୍ତୁ ସେଇ ଦିନଟା ବିଶେଷ କରି ମୋ ଜୀବନ ଭିତରେ ମନେ ରଖିବା ଭଳି । କାହିଁକି ନା ସେହି ପହିଲୁ ଦିନୁ ମୁଁ ଜାଣି ପାରିଲି ସେ ମତେ କେତେ ଭଲ ପା'ନ୍ତି । ସ୍ୱାମୀ, ଆଉ ଗୋଟିଏ ଆଈଶାଶୁ, ଏ ଛଡ଼ା ଏ କୁଳରେ ମୋର ଆଉ କେହି ନ ଥିଲେ । ଆଈଶାଶୁଙ୍କୁ ପୁଣି ଭଲ ଦିଶେ ନାହିଁ ।

ମତେ ସେଥିପାଇଁ ନୂଆବୋହୂର ନାଜ ଛାଡ଼ ସବୁ କାମ କରିବାକୁ ହେଲା ସେହି ଦିନଠୁଁ ।

ସେ ବି ଆଉ ମତେ ଛାଡ଼ି କଟକ ଗଲେ ନାହିଁ । ଯେମିତି ଆଖିରୁ ଦଣ୍ଡେ ଅନ୍ତର କରି ସେ ଚଳି ପାରିବେ ନାହିଁ କେଉଁଠି ! ଶୋଇବା ଘରଟିରେ ସକାଳୁ ସଞ୍ଜଯାଏ ମୁହଁ ଚାହାଁଚାହିଁ ହୋଇ ଦିହେଁଯାକ ବସିଥାଉଁ । କେତେ ଦେଶର କେତେ ଆଶ୍ଚର୍ଯ୍ୟ କଥା ପଡ଼େ । ଗପୁ ଗପୁ ସଞ୍ଜ ହୋଇଯାଏ, ଆମ କଥା ସରେ ନାହିଁ ।

ଦିନେ । ଏମିତି ସେ ଦିନ ଭାରି ବର୍ଷା । ସେ କୁଆଡ଼େ ଯାଇଥିଲେ । ଦାଣ୍ଡ ପିଣ୍ଡାରେ ଠିଆ ହୋଇ ଚାହିଁଛି ଦିଗବୁଡ଼ା ବିଲ ଅସରନ୍ତି ଭିତରେ ବର୍ଷା ପବନର ଲୁଚକାଳି ଖେଳ ଅଡ଼କୁ । ସେ ପଛରୁ ଆସି ମୋ ଆଖି ଦିଟା କରି ଧରିଲେ । ଚମକାପଡ଼ି କହିଲି; ମୁଁ ଜାଣେ—

ପଚାରିଲେ କିଏ ?

ସେଇ—

ନାଁ' ନ କହିଲେ ଛାଡ଼ିବି ନାହିଁ ।

ହସ ମାଡ଼ିଲା କଥା ଶୁଣି । କହିଲି; ମୁଁ ଜାଣେ ନାହିଁ ଯା ।

ଆଖି ଛାଡ଼ି ମୋ କାନ୍ଧ ଉପରେ ହାତ ରଖି ସେ କେତେ ଶରଧାରେ ଡାକିଲେ; ରଜା !

ଉଁ—

କେମିତି ବର୍ଷା ?

ଭାରି !

ଏତେବେଳଯାଏ ଭାରି ମନ କ'ଣ ହେଉଥିଲା ପରା କାହାକୁ ନ ଦେଖି ? ସେ ହସିଲେ ମୋ ଆଡ଼େ ଚାହିଁ ।

ଭାରି ନାଜ ମାଡ଼ିଲା । ସେ କଥା ଗୋଳାଇ ଦିବାକୁ ପଚାରିଲି, କୁଆଡ଼େ ଯାଇଥିଲ କି ଆଜି ?

କହିଲେ; ଆମ ଜମିଦାରଙ୍କ ଘରକୁ । ଅନେକ ଦିନ ପରେ ଆମ ବୁଢ଼ା ଜମିଦାରଙ୍କ ପୁଅ ବୃନ୍ଦାବନ ଆସିଚି, ଭାବିଲି ଦେଖା କରିଆସେ ଟିକେ ।

ବୃନ୍ଦାବନ ! ଏ ସେଇ ବୃନ୍ଦାବନ ନୁହେଁ ତ ? ଯାହା ସାଙ୍ଗେ ଏଥି ଅଗରୁ ମୋ ବାହାଘରର ସବୁ ଥୟ ହୋଇ ଯାଇଥିଲା । ପଚାରିଲି, ବୃନ୍ଦାବନ କିଏ କହୋ ?

ଆଶ୍ଚର୍ଯ୍ୟ ହୋଇ ସେ ମୋ ମୁହଁକୁ ଚାହିଁଲେ । କହିଲେ; ଏତେ ଜଲଦି ଭୁଲିଗଲୁଣି ? ଦି' ବର୍ଷ ତଳେ ମୁଁ ଆଉ ବୃନ୍ଦାବନ ପରି ସାଙ୍ଗ ହୋଇ ତମ ଘରକୁ ଯାଉଥିଲୁ । ତୋ' ସାଙ୍ଗେ ପୁଣି ତାର ବାହାଘର ପ୍ରସ୍ତାବ ଚାଲିଥିଲା । ମନେ ନାହିଁ ?

କହିଲି; ହଁ ମନେ ପଡ଼ିଲା ।

ଆଗେ ଆମ ଘରକୁ ଆସୁଥିଲା ବରାବର, ଯେବେ ଏ ଗାଁକୁ ଆସେ । ଆଉ ମୋ ବାହାଘର ପରେ ଆସିନାହିଁ । ଦିନେ ତୋ ନାଁ କହି ଡାକି ଆଣିବି ତାକୁ ।

କହିଲି; ନାହିଁ ନାହିଁ ମୋ ନାଁ କାହିଁକି କହିବ ଛି-ଛି, ତମେ ତମର ଡାକି ଆଣିବ ।

ଅଚ୍ଛା ହଉ; କହି ସେ ଲୁଗା ପାଲଟିବାକୁ ଘର ଭିତରକୁ ଚାଲିଗଲେ । ଭିତର ଘରୁ ଚୌକିଟା କାଢ଼ି ପରିବା ବସେଇ ବସିଲି ରାତି ପାଇଁ ।

( ତିନି )

ଦିନେ ସତରେ ସେ ବୃନ୍ଦାବନଙ୍କୁ ଡାକି ଆଣିଲେ ।

ସଞ୍ଜବେଳେ ବିଛଣା ପକାଇବାକୁ ଘର ଭିତରକୁ ଯାଇଚି, ବାହାରେ କାହା ପାଟି ଶୁଭିଲା । ଚାହିଁଲି, କବାଟ ପାଖେ ସେ ଆଉ ବୃନ୍ଦାବନ—

ମତେ ଦେଖି ବୃନ୍ଦାବନ ଦୁଆର ମୁହଁରୁ ଟିକେ ଘୁଞ୍ଚିଗଲେ । ଓଢ଼ଣା ପକାଇ ମୁଁ ତରବରରେ ସେ ଘରୁ ପଳାଇଗଲି । ଘର ଭିତରେ ତାଙ୍କ ଭୁରୁ ଶୁଭୁଥାଏ । ଜଳାକବାଟି ପାଖେ ଗୁହିଁଲି । ଏଇ ସେଇ ବୃନ୍ଦାବନ ବରଷ ଦ'ଟାରେ ଏତେ ବଦଳି ଗଲଣି ନା ? ଆଗ ପିଲାଳିଆ ଚେହେରା ଆଉ ନାହିଁ । ଏହ୍ୱଷଣି ଯେମିତ ପୁରା ବାବୁ ।

ତାଙ୍କ ସଙ୍ଗେ ସେ ଗପ କରୁ କରୁ କହିଲେ; ଆଜିକାଲି ତୁ ତ ଖୋଦ୍ ଜମିଦାର । ଗରିବ ଘରେ ବସିବୁ ବୋଲି କହିବାକୁ ବି ନାଜ ମାଡ଼ିଲଣି ଏଣିକି ।

ବୃନ୍ଦାବନ କହିଲେ; କେତେ ଥଟ୍ଟା କର ତମେ ଦାସଭାଇ ! ଏଇ ଘରେ ପିଲାଟିକାଳରୁ ମୁଢ଼ି ଚୁଡ଼ା ଖାଇ ଖାଇ ଟସ୍ ଏ ଦେହରେ ଅଧେ ରକ୍ତ ହୋଇଥିବ । ସେ କଥା କ'ଣ ଭୁଲି ଗଲିଣି ଏତେ ଶୀଘ୍ର ?

ତେବେ ଜମିଦାର—

ବୃନ୍ଦାବନ ଅସହିଷ୍ଣୁ ହୋଇ କହି ଉଠିଲେ; ଫେର ଯଦି ଜମିଦାର ଜମିଦାର ହେବ, ଆଉ ଆସିବ ନାହିଁ ଏତିକି ଜାଣିଥା ।

ସେ ହସିଲେ । କହିଲେ; କୋଉ ଏବେ ଅଜଯାଏ ଆସୁଥିଲୁ ? ଡାକିଲାଠଉଁ ସିନା !

ତଳକୁ ମୁହଁପୋତି ବୃନ୍ଦାବନ କହିଲେ; ନାଇଁ କାମଦାମ ଗହଳରେ ଆସି ପାରି ନଥିଲି । ଏଣିକି ବରାବର ଆସିବି ।

ଝିଡ଼କି ପାଖେ ଅଜାଣତରେ କେତେବେଳେ ମୋ ହାତକାଚ ବୋଧହୁଏ ଟିକେ ବାଜି ଉଠିଥିବ, ବୃନ୍ଦାବନ ମୁହଁ ଫେରାଇ ଝିଡ଼କି ଆଡ଼େ ଟିକେ ଗୁହିଁଲେ, ତା'ପରେ ହଠାତ୍ ଉଠି କହିଲେ; ଆଜି ଯାଉଚି ଦାସଭାଇ, କାମ ଅଛି ଆଉ ଦିନେ ଆସିବି ।

ଆଗରେ ଆଲୁଅ ଦେଖାଇ ସେ ପଦାକୁ ଅସିଲେ । ତାଙ୍କ ପଛେ ପଛେ ବୃନ୍ଦାବନ । ଘରୁ ବାହାରିଲା ବେଳେ କାହିଁକି କେଜାଣି ବୃନ୍ଦାବନ ଏ ଅଡ଼େ ସେ ଅଡ଼େ ଥରେ ଚାହିଁଲେ । ତା' ପରେ ପିଣ୍ଡାରୁ ଓହ୍ଲାଇ ଦଣ୍ଡେକ ଭିତରେ ଗଛ ଗହଳି ଭିତରେ ଅଦୃଶ୍ୟ ହୋଇଗଲେ ।

ବୃନ୍ଦାବନଙ୍କୁ ଖଣ୍ଡେଦୂର ବଳାଇ ଦେଇ ସ୍ୱାମୀ ଫେରି ଅସିଲେ । ପିଣ୍ଡା ଖୁଣ୍ଟକୁ ଆଉଜି ସେତେବେଳଯାଏ ଠିଆ ହୋଇଥାଏ ମୁଁ ତାଙ୍କୁ ଚାହିଁ ।

ପାଖକୁ ଅସି ପଚାରିଲେ; ଦେଖିଲ ବୃନ୍ଦାବନକୁ ?

ଅନ୍ୟ ଅଡ଼େ ମନ ଥିଲାପରି ଖାଲି କହିଲି ହୁଁ ।

ଭାରି ଭଲ ପିଲାଟିଏ, ନୁହେଁ ? ସେ କହିଲେ ।

କହିଲି, କେଜାଣି ହେଇଥିବ !

ତହିଁ ଆରଦିନ ବୃନ୍ଦାବନ ପୁଣି ଅସିଲେ ଆମ ଘରକୁ ବୁଲି । ଦାଣ୍ଡ ଘରେ ତାଙ୍କୁ ବସାଇ ସ୍ୱାମୀ ମତେ ଅସି ପଚାରିଲେ ମା କେଉଁଠି ?

ପୂଜା କରୁଛନ୍ତି ଆରଘରେ । କାହିଁକି ?

ବୃନ୍ଦାବନ ଖୋଜୁଛି, ଦେଖା କରିବ ।

ବୃନ୍ଦାବନଙ୍କୁ ଡାକିବାକୁ ସେ ଚାଲିଗଲେ ।

ମାଙ୍କ ସାଙ୍ଗେ ଦେଖାକରି ଫେରିଲା ବେଳେ ଆଡ଼ହୋଇ ମୁଁ ଘର ଭିତରକୁ ପଶିଗଲି । ପିଣ୍ଡାରେ ବୃନ୍ଦାବନ ମତେ ଦେଖିପାରି ପଚାରିଲେ ସେ କିଏ, ରତି ନା, ଦାସଭାଇ ?

ସେ କହିଲେ; ହଁ ।

ମଲା ମତେ ପୁଣି ଏତେ ନାଜ । ସେ ଦିନ ମୋରି ଅଗରେ ଲଙ୍ଗଳା ହୋଇ ଡେଉଁଥିଲା ପରା । ଆଜି ପୁଣି ଭାଉଜ ଅସନ ଦଖଲ କରି ବସିଲେଣି । ନାଜ ଛାଡ଼ୁନାହିଁ ତଥାପି ?

ସେଉଠୁ ପଚେ ଲକ୍ଷ୍ମୀ କର ବଡ଼ ପାଟିରେ ବୃନ୍ଦାବନ କହିଲେ; ମୁଢ଼ି ଅଉ ନଡ଼ଆ ବୃଝିଲ ଭାଉଜ ବୋଉ, ଅଜ ନ ଖାଇଲେ ତମ ଶ୍ରୀହସ୍ତରୁ ମୁଁ ଉଠୁ ନାହିଁ ଏଠୁଁ ଜାଣିଥା ।

ଥାଳ ଗୋଟାକରେ ମୁଢ଼ି ନଡ଼ିଆ ସଜାଡ଼ି କବାଟ ଯାଏ ଗଲ, ଯୋଉ ଘରେ ସେମାନେ ବସିଥିଲେ । ଭିତରକୁ ଯିବାକୁ କେମିତି ଲାଜ ନାଜ ମାଡ଼ିଲା

ଘର ଭିତରୁ ସ୍ୱାମୀ ଡାକିଲେ; କାହିଁ ଆସିଲ ? ବୃନ୍ଦାବନ ଏଣେ ଅଥୟ ହେଲଣି ।

ମୁଣ୍ଡରେ ଲୁଗା ଟିକେ ଟାଣି ଦେଇ ଘର ଭିତରକୁ ଗଲ ।

ମୋ ଆଡ଼କୁ ଚାହିଁ ହସି ହସି ବୃନ୍ଦାବନ କହିଲେ; ଏତେ ପର ହୋଇଗଲ ମୁଁ ? ମତେ ଚିହ୍ନି ପାରୁଚ ନା ?

କିଛି ଜବାବ ଦେଲ ନାହିଁ ।

ସ୍ୱାମୀ କହିଲେ; ମଲ ବୃନ୍ଦାବନଟାକୁ ଏତେ ଲାଜ ପଡ଼ୁଚ ?

ମତେ ମନେ ପଡ଼ୁଛି ? ବୃନ୍ଦାବନ ପୁଣି ପଚାରିଲେ ।

ବାଧ ହୋଇ କହିଲି; ହଁ ।

କାହିଁ କିଛି ତ ପଚାରିଲ ନାହିଁ ।

କ'ଣ ପଚାରିବ ?

ବାପା ହେଉକା ତମର କେମିତି ଅଛନ୍ତି ? ଅଉ, ଅଉ ଗୋଟାଏ କଥା ?

ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼େ ଚାହିଁଲି ।

ସେ କହିଲେ; ଅଉ ମୁଁ ତମକୁ ଏଣିକି ଭାଉଜ-ବୋଉ ବୋଲି ଡାକିବ ନା ସେଇ ରତି ବୋଲି ଡାକିବ । ବୃନ୍ଦାବନ ବଡ଼ ପାଟି କରି ହସି ଉଠିଲେ ।

ମଲ ଯା, ନାଆଁ ଲଗା ବବାଢ଼ିଟା ଭିତର ଘରକୁ ପଶିଲାଣି, କହି ମୁଁ ସେଠୁ ପଳାଇ ଆସିଲି ।

( ଚାରି )

ସେଇ ଦିନଠୁଁ ବୃନ୍ଦାବନ ପ୍ରାୟ ସବୁଦିନେ ଆସନ୍ତି ଆମ ଘରକୁ । ଆସିଲେ ମୋ ସଙ୍ଗେ ଅଡ୍ଡା ନକଲ ହେବା ଯେମିତିକି ତାଙ୍କର ଗୋଟାଏ କାମ ହୋଇଛି, ମତେ କିନ୍ତୁ କାଠ କାଠ ଲାଗେ କେମିତି ଆଗ ପରି ତାଙ୍କ ସଙ୍ଗେ ସହଜ ଭାବରେ ମିଶିବାକୁ । କିନ୍ତୁ ସେ କ'ଣ ଛାଡ଼ିବା ଜନ୍ତୁ ? ଏମିତି କଥା ପଦେ ଅଧେ ପଚାରି ବସନ୍ତି ଯେ ଜବାବ ନ ଦେବାକୁ ବାଟ ନ ଥାଏ । ସ୍ୱାମୀ ଦିନେ ଦିନେ ଠିକେ ବିରକ୍ତ ହୁଅନ୍ତି । କହନ୍ତି, ସେ ଏତେ ନାଜ କରୁଛି, ତତେ କ'ଣ ଭଲ ଲାଗୁଛି ତା ସଙ୍ଗେ ଫୁଗୁଣେଇ ହବାକୁ ? ମୋ ଉପରେ କି ତାଙ୍କ ଉପରେ ବିରକ୍ତ ହୋଇ ସେ ଏ କଥା କହନ୍ତି ମୁଁ ବୁଝି ପାରେ ନା କିନ୍ତୁ ଅଜି ଭାବୁଛି କେଡ଼େ ଉଚିତ ଥିଲା ମୋର ସେତିକିବେଳେ ସେ କଥା ବୁଝି ପାରିବା !

ଜୀବନ ଭରି ଏ ଦୁଃଖ ଗଞ୍ଜଣା ତାହାହେଲେ ମତେ ଆଜି ସହିବାକୁ ପଡ଼ି ନ ଥାନ୍ତା । କିନ୍ତୁ କ'ଣ ହବ । ସୁଖ ସୌଭାଗ୍ୟର ଦିନ ତ ମୋର ସରି ଆସିଥିଲା ତାଙ୍କ ପ୍ରସାଦରେ; ସିଏ ଏ ଦିନସବୁ କରୁଛନ୍ତି !

ଦିନେ ସକାଳେ, ମେଘ ଛାଡ଼ିଯାଇ ସେ ଦିନ ଗଛପତ୍ର ଧାହରେ କଅଁଳ ଖରାର ସୁନେଲି ତବକ ଜଡ଼ି ଯାଇଛି । ଅଗଣାରେ ବିଛଣା ତକିଆ ଖରାରେ ଦଉଛି । ଘର ଭିତରୁ ସେ ଡାକିଲେ; ରତି !

ତର ତରରେ ଶେଜ ତକିଆ ମେଲାଇ ଦେଇ ଘର ଭିତରକୁ ଆସିଲି । ଖଟ ଉପରେ ସେ ବସିଥିଲେ କହିଲେ; ବସ୍ ଟିକେ କାମ ଅଛି ।

ପାଖରେ ଯାଇ ବସିଲି । ମୋର ଗୋଟାଏ ହାତ ତାଙ୍କ କୋଡ଼ ଉପରକୁ ଟାଣି ନେଇ ସେ କହିଲେ; ଏତେ ଦିନ ତ ଦୁଃଖ କଷ୍ଟରେ ଚାଲିଗଲା ଏଣିକି କ'ଣ ହେବ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲି; କ'ଣ ଚାଲିଗଲା ?

ଆମର ଘରକଥା କହୁଛି । ମୁଁ ତ ବର୍ଷେ ହେଲା ଗାଁରେ ଆସି ବସିଲି । କଟକରେ ଥିଲେ ଟିକିଏ ବାହାର ଖଣ୍ଡେ କୋଉଠି ଦେଖିଥାନ୍ତି ଅବା । ଘରେ ବସି ଖାଇଲେ କେତେ ଦିନ ଯିବ ? ଜମିବାଡ଼ି ଗୁଡ଼ାଏ ସେମିତି ଥାଆନ୍ତା ଭଲ, ସେଥିପାଇଁ ଭାବନା ପଡ଼ନ୍ତା ନାହିଁ । ଏଣିକି କୋଉଁଠି ରୋଜଗାରର ଫନ୍ଦା ନ ଦେଖିଲେ ଚଳିବ କୁଆଡ଼ୁ ?

ତେବେ କ'ଣ କଟକ ଯିବ ? ଡରି ଡରି ପଚାରିଲି ।

ତଳକୁ ମୁହଁପୋତି ସେ ଅସ୍ତେ ଅସ୍ତେ କହିଲେ; ତା ଛଡ଼ା ଆଉ ଉପାୟ କଣ ?

ଭୟରେ ଛାତି ଭିତର କ'ଣ ହୋଇଗଲା ମୋର ସେ କଥା ଶୁଣି । ଗଳାକୁ ତାଙ୍କର ଦି ହାତରେ ବେଢ଼ାଇ ଧରି ବିକଳ ହୋଇ କହି ପକାଇଲି; ନାହିଁ, ନାହିଁ ତମେ କଟକ ଯା'ନା । ମୁଁ ମରିଯିବି ଗଲେ । ତାଙ୍କ ଛାତିରେ ମୁହଁ ଲୁଚାଇ ଝର ଝର ହୋଇ କାନ୍ଦି ପକାଇଲି ।

କେତେ଼ ଆଦରରେ ସେ ମୋ ମୁହଁକୁ ଟେକିଧରି; କାନ୍ଦରେ ଲୁହ ପୋଛି ଦେଲେ । ହସି ହସି କହିଲେ ମୁଁ କ'ଣ ସତରେ କଟକ ଚାଲିଯିବି ତତେ ଛାଡ଼ି ?

ତଥାପି ସନ୍ଦେହ କରି ପଚାରିଲି; ଆଉ ଏଇଟିଣି କହିଲ ?

ମିଛରେ ସେମିତି କହୁଥିଲି ନା । ତେବେ ବୃନ୍ଦାବନ ଦିନେ ମତେ କହୁଥିଲା ତାଙ୍କ ଜମିଦାରୀ ସେରସ୍ତାରେ ଏଇଟି ଖଣ୍ଡେ ଚାକିରି ଦବ ।

ଅଗ୍ରହରେ କହି ପକାଇଲି; ହଁ—ହଁ ତମେ ସେଇଠି ଚାକିରି କର; ଭଲ ହବ । ମତେ ଗାଡ଼ି ଆଉ କଟକ ପଟକ ପଲାନା ।

ସେ କହିଲେ ଅଚ୍ଛା ସଞ୍ଜବେଳେ ଆସିବ ସେ । ମୁଁ ବୁଝି କରି କହିବ ବୋଲି କହିଚି ତାକୁ ଚାକିରି କଥା ।

ତହିଁ ଆରଦିନ ସତରେ ସେ ଚାକିରି ପାଇଲେ । ଦିନ ଘଡ଼ିକଠଉଁ ଖାଇପିଇ ଚାଲିଯାନ୍ତି ସେ ବରାବର ସଞ୍ଜବେଳେ ଧାଇଁ ଫେରନ୍ତି ଘରକୁ । ଦିନେ ଦିନେ ରାତି ହୋଇଯାଏ ଅନେକ । ଆକୁଳ ଅପେକ୍ଷାରେ ଚାହିଁ ଚାହିଁ ସେ ଦିନ ଆଖିରୁ ମୋର ପାଣି ମରେ ।

ଦିନେ; ଖରା ବେଳଠଉଁ ସେ ଦିନ ଭାରି ମେଘ ଉଠେଇ ଥାଏ । ସେ ଘରେ ନ ଥିଲେ । ଖଟ ଉପରେ ପଡ଼ି ପଡ଼ି ଶୋଇବାକୁ ଚେଷ୍ଟା କରୁଚି, ଦୁଆର ମୁହଁ ପାଖେ ପାଟି ଶୁଭିଲା । ଚାହିଁ ଦେଖିଲି ବୃନ୍ଦାବନ, ଧଡ଼ପଡ଼ ହୋଇ ଖଟ ଉପରେ ଉଠି ବସିଲି । ସେ ମୋ ପାଖକୁ ଆସି ହସି ହସି ପଚାରିଲେ; ନିଦ ମାଡ଼ୁ ନାହିଁ ପରା ଶୋଇ ଶୋଇ ?

କହିଲି, ନାହିଁ ।

କେମିତି ଲୋକ ସେ କେଜାଣି କହୁଁ କହୁଁ ଆସି ଖଟ ଉପରେ ମୋ ପାଖଟାରେ ବସି ପଡ଼ିଲେ । ପଚାରିଲେ; ବଡ଼ ମା କାହାନ୍ତି ?

ସେଦିନ କାହିଁକି ଭାରି ଡର ମାଡ଼ିଲା ତାଙ୍କ ବ୍ୟବହାର ଦେଖି ! କହିଲି ସେ ଶୋଇଚନ୍ତି ।

ଦଣ୍ଡେ ଗଲା ।

ସେ ଆଗେ କଥା କହିଲେ । ଡାକିଲେ; ରତ୍ନ !

କ'ଣ ?

ଦି ବର୍ଷ ତଳକଥା ମନେ ପଡ଼େ ତୋର ? ସେଦିନ ଏମିତି ବର୍ଷା । ଝିଲିଡଲ ପାଣିରେ ଭସାଇବାକୁ ମତେ ତୁ କାଗଜ ଡଙ୍ଗା

ତାଙ୍କୁ ଅଧିକ ଜାଣିବା ପାଇଁ ଚାହିଁଲି । କିନ୍ତୁ ସେ କାହିଁକି ଏକଥା କହିଦେଲେ ?

ଙ୍ଅର କହିବାକୁ କହିଲି । ପଚାରିଲି କ’ଣ ଦବୁ ଡଙ୍ଗା କରିଦେଲେ ?
ମନେପଡ଼େ ସେଦିନ କହିଥିଲି ମୁଁ ତମକୁ ବାହା ହେବ । ସେଇଦିନୁ
ଏ ଧାରଣାଟା ମୋ ମନରେ ଏକାବେଳେ ଜଡ଼ି ରହିଛି ।

ଆଜି ସ୍ବାମୀଙ୍କର ଏ କି କଥା ? ଭାରି ଅଡ଼ୁଆ ଲାଗୁଥାଏ ମତେ,
କ’ଣ କରିବି, କାଠ ପିତୁଳା ପରି ବସି ରହିଲି ।

ସେ କହିଗଲେ; ଆଜିଯାଏ ସେଥିପାଇଁ ସେମିତି ଏକୁଟିଆ
ଅଛୁ ? କେତେ ଜାଗାରୁ ସମ୍ବନ୍ଧ ଫେରାଇ ଦେଲଣି । କାହାପାଇଁ,
ଏ ସବୁ ଜାଣୁ ? କାହା ରୂପ ଗୁଣର ତୁଳନା ପୃଥିବୀ ଭିତରେ
ଆଜିଯାଏ ପାଇ ନାହିଁ ବୋଲି ସେଇଦିନୁ ଏମିତି ଏକୁଟିଆ ହୋଇ
ରହିଁ ବସିଛି ଜାଣୁ ଇଛି ?

ବାହାରେ ଝିର ଝିର ହୋଇ ବର୍ଷା ଆରମ୍ଭ ହେଲା । ‘ଦୁଆରୁ
ଲୁଗା ତୋଳି ଆଣେ’ ବୋଲି କହି ସେ ଘରୁ କୌଣସି ମତେ
ପଳାଇ ଆସିଲି, ଏକା ଥରକେ ମା ଯୋଉଠି ଶୋଇଥିଲେ ।

ଗୋଡ଼ ଶବ୍ଦ ଶୁଣି ପଚାରିଲେ; କିଏ ? ଆସ୍ତେ ଆସ୍ତେ ପାଖକୁ
ଯାଇ ତାଙ୍କ ଗୋଡ଼ ଘସି ବସିଲି । ଦାଣ୍ଡ ଘରକୁ ପୁଣି ଯିବାକୁ ମୋର
ଆଉ ସାହସ ହେଲା ନାହିଁ ।

ସେଦିନ ରାତିରେ, ଖାଟ ସାଉ ଖଟ ଉପରେ ସ୍ୱାମୀଙ୍କ ପାଖରେ
ଶୋଇ କହିଲି; ବୃନ୍ଦାବନ ଆଜି ଆସିଥିଲେ ଏଠିକି ।

ଭାରି ଆଶ୍ଚର୍ଯ୍ୟ ହୋଇ ସେ ପଚାରିଲେ; କେତେବେଳେ ?
କହିଲି; ଦି ପହରେ । ତମେ ନ ଥିଲ ବେଳେ ।

କଥା ଶୁଣି ତାଙ୍କ ମୁହଁଟା କେମିତି କଳା ପଡ଼ିଗଲା । କହିଲେ;
ଭାରି ବେହିଆ ଏ ବୃନ୍ଦାବନଟା । ତୁ ତା ସାଙ୍ଗେ ସାବଧାନ ହୋଇ

ଚଳୁଥିବୁ । ତହିଁ ଆର ଦିନଠଉଁ ସେ କାମକୁ ଯିବା ବେଳ ବଦଳାଇ ଦେଲେ । ଦି ପହରେ, ଟିକେ ଶୋଇ ଯାଇ ନେଉଛି ଗଳ୍ପ ପରେ ବାହାରନ୍ତି, ଅସ୍ପ ଅସ୍ପ ରାତି ସେମିତି ଅନେକ ହୋଇଯାଏ । ଭାବିଲି ଅଉ ବୋଧହୁଏ ବୃନ୍ଦାବନ ମତେ ବିରକ୍ତ କରିବାକୁ ଆସିବେ ନାହିଁ ।

## ( ପାଞ୍ଚ )

ବୃନ୍ଦାବନ କୁହୁକ ଜାଣନ୍ତି ନା କଣ ? ଉପରଓଳି ସ୍ୱାମୀ ଦିନେ ଯେମିତି କାମକୁ ଚାଲି ଯାଇଛନ୍ତି ସେ କୁଆଡୁ ଆସି ପୁଣି ପହଞ୍ଚି ଗଲେ । ନ ଦେଖିଲା ପରି ହୋଇ ମୁଁ ସେ ଘରୁ ବାହାରି ଯାଉଥିଲି ଡାକିଲେ; ରତି ।

ବାଧ୍ୟ ହୋଇ ଫେରି ଚାହିଁଲି । ପଚାରିଲି; କାହିଁକି ଡାକୁଚ ? ମୋର କାମ ଅଛି ଯାଉଚି ।

କାମ ଅଛି ବୋଲି ଖଣ୍ଡେ ପାନ ବି ମିଳିବ ନାହିଁ ? ସେ କହିଲେ ।

ଭାରି ଚିଡ଼ି ମାଡ଼ି ଥାଏ । କ'ଣ କରିବି, ପାନ ଆଣିଦେଲି । ନଇଲେ ଏ ପଦ ଚିଡ଼ିଯାନ୍ତି ସ୍ୱାମୀଙ୍କର ଗୁଣଗାଣ ହୋଇ ଯିବ ।

ଘର ଭିତରେ ଜଳାକବାଟି ପାଖରେ ସେ ଠିଆ ହୋଇଥିଲେ । ପାନ ଥାଳିଆ ନେଇ ମୋ ହାତଟା ହଠାତ୍ ଧରି ପକାଇ କହିଲେ; ମୋ କଥା ଶୁଣିବୁ ନାହିଁ ଥରେ ?

ବିରକ୍ତରେ ହାତଟା ଛଡ଼ାଇ ନେଇ ପଚାରିଲି; କି କଥା ?

ସେ କହିଲେ, ଶୁଣି ବିଶ୍ୱାସ ଯିବୁ ମୋ କଥାରେ ? ମୁଁ—ମୁଁ ତ କେତେ ଆଶା କରି ଏଠିକି ଆସେଁ । ତୋ ମୁହଁରୁ ଖାଲି ପଦେ କଥା ଶୁଣିବାକୁ ।

ହାଡ଼ ଜଳିଗଲା କଥା ଶୁଣି । କ'ଣ କରିବି, ଚୁପ୍ ହୋଇ ଶୁଣିବାକୁ ହେଲା ସବୁ ।

ସେ କହିଲେ ଏ ଦି'ବର୍ଷ ଏକ ପ୍ରକାର ନିଶ୍ଚିନ୍ତ ହୋଇଥିଲି କିଛି ନ ଦେଖି । ଏଣିକି ସତରେ କହୁଛି ମତେ ଖାଇବା ପିଇବା ବିଷ ପରି ଲାଗିଲାଣି ତୋ କଥା ଭାବି, ରତି ! ସତେ ମୋଠୁଁ ଏମିତି ଦୂର ହୋଇ ରହିବୁ ସବୁଦିନେ ? ପାଖକୁ ଆସି ସେ ପୁଣି ମୋ ହାତ ଧରିଲେ ।

ଦିହ ଟଗାଠ'କ ଥର ଉଠିଲା ମୋର ରାଗରେ । ଆଉ ସମ୍ଭାଳି ପାରିଲି ନାହିଁ । ଜୋରରେ ହାତଟା ତାଙ୍କର ଛୁଆଁଡ଼ି ଦେଇ ଘରୁ ବାହାରିଗଲି । ଗଲାବେଳେ କହିଲି; ଭଦ୍ରଲୋକ ଯଦି ହୋଇଥିବ ତମେ, ଆଉ ଦିନେ ଏ ଘର ଦୁଆର ମୁହଁ ମାଡ଼ିବ ନାହିଁ କହି ଦାଉଛି ।

ମୋ ପଛେ ପଛେ ସେ ବାହାରକୁ ଆସିଲେ । ଚାଲି ଗଲାବେଳେ ଖାଲି ଏତିକି ତାଙ୍କ ପାଟିରୁ ଶୁଭିଲା, 'ଅଚ୍ଛା-ହଉ' । ମୁଁ ଶୁଣି ନ ଶୁଣିଲା ପରି ଚାଲି ଆସିଲି ।

ସବୁଦିନ ପରି ସେ ଦିନ ବି ସ୍ୱାମୀ ଅନେକ ରାତିରେ ଘରକୁ ଫେରିଲେ । ଖାଇ ବସି ପଚାରିଲେ, ଆଜି ବୃନ୍ଦାବନ ଆସିଥିଲା ?

କହିଲି; ହଁ ।

ଆଜିକା କଥା ତାଙ୍କ ଆଗେ କହିଦବାକୁ ଭାରି ମନ ହଉଥାଏ । କିନ୍ତୁ କହିବି କହିବି ବୋଲି କିଛି କହି ପାରିଲି ନାହିଁ ନାଜରେ ।

ଆଉ କିଛି ନ ପଚାରି ଖାଇସାରି ସେ ଉଠିଗଲେ । ହାତ ଧୋଇ ଚୁପ୍‌ହୋଇ ଯାଇ ଖଟ ଉପରେ ଶୋଇ ପଡ଼ିଲେ । ମୋର ବି ଆଉ ସାହସ ହେଲାନାହିଁ ତାଙ୍କୁ ବିରକ୍ତ କରିବାକୁ ସେ ଦିନ ।

ଦି'ଦିନ ପରେ ଶୁଣିଲି ସେ ଜମିଦାରଘର ଚାକିରି ଛାଡ଼ି ଦେଇଛନ୍ତି ।

( ଛଅ )

ଏଇଯା ଏ କହି ଆଲୁଅ ପୁଣି ଥରେ ତୁନିହେଲା । ତେଜ ତାର ଖୁବ୍ ମିଞ୍ଜି ମିଞ୍ଜି ହେଇ ଆସିଲା, ସତେ କି ଏଇକ୍ଷିଣି ଲିଭିଯିବ !

ଗଛ ଉପରୁ ବାଦୁଡ଼ଟା ବେଷ୍ଟ ହୋଇ ଡାକିଲା; ମଲା ମଲା, କଥାଟା ଏମିତି ଅଧା କରି ଛାଡ଼ିଦିବ କି ? ସେଉଠୁଁ କ'ଣହେଲା କୁହ କୁହ—

ଖୁବ୍ ଧୀରେ, ଖୁବ୍ ଭୁନ ଭୁନ, ଅଳ୍ପଅ ସେଉଠୁ ଆରମ୍ଭକଲା; ମୋ କଥା ଆଉ ବେଶି ନାହିଁ । ଏଣିକି ଥୋଡ଼କଥା କହିବି, ବଡ଼ କରୁଣ ବଡ଼ ଦୁଃଖର ସେ କାହାଣୀ । ଏ ଅପିଣ୍ଡ ପ୍ରାଣରେ ବି ଆଜିଯାଏ ସେ କଥା ଗୁଡ଼ାକ ନିଆଁ ପରି ଜଳୁଚି, ଦିନରାତି ! ·

ତାପରେ ସେ'ତ ଗ୍ରହଣ କରି ଛାଡ଼ିଦେଲେ । ମନେ ମନେ ଖୁବ୍ ଖୁସି ହୋଇ ଭାବିଲି ଯା' ହଉ ଏଥର ବୃନ୍ଦାବନଙ୍କ ହାତରୁ ରକ୍ଷା ପାଇଲି ମୁଁ । କିନ୍ତୁ ଯାହାପାଇଁ ଏତେ ଆନନ୍ଦ ସେ ସ୍ୱାମୀ କାହିଁକି ଆଗ ପରି ମୋ ସଙ୍ଗେ ଆଉ ସହଜରେ ମିଶି ପାରିଲେ ନାହିଁ ସେହିଦିନ ରାତିଠୁଁ । କେମିତି ମତେ ସବୁବେଳେ ଭଲକରି କଥା କହନ୍ତି ନାହିଁ, ଖାଲି କରଛଡ଼ା ଦେଇ ବୁଲନ୍ତି । ଦରକାର ପଡ଼ିଲେ ଯାହା ଦିଟା ଗୋଟାଏ କଥା କହନ୍ତି ସେତିକି ବି ପୁଣି ମୁହଁ ଶୁଖେଇ । ଭାବିଲି ମୋର ସୁଖର ଦିନ ଏଣିକି ସରି ଆସିଲା ।

କାହିଁକି ସେ ମୋ ଉପରେ ଚିଡ଼ିଛନ୍ତି ଦିନେ ଦିନେ ପଚାରିବାକୁ ଭାରି ମନହୁଏ, କିନ୍ତୁ ମୁହଁକୁ ଚାହିଁ ତାଙ୍କର ସାହସ ହୁଏନା ପଚାରିବାକୁ ସେ କଥା । କାଳେ ବେଶି ଚିଡ଼ିବେ ? ରାତିରେ ସେ ଶୋଇ ପଡ଼ିଲା ପରେ ଭୁନ ଭୁନ ଅନେକ ବେଳଯାଏଁ କାନ୍ଦେ । ବେଳେ ବେଳେ ଭାବେ ଏ ନିଉଚ୍ଛୁଣା ଜୀବନଟାରେ ଆଉ କଅଣ ଦରକାର ? ପୋଖରୀ ଅଥଳ ପାଣିରେ ଗୋଡ଼ ଖସାଇବାକୁ ଭାରି ମନହୁଏ । ଏଇ କଥା ଭାବି ନିଛାଟିଆ ଦିପହରେ କେତେଥର ପୋଖରୀକି ମଧ୍ୟ ଯାଏ, କିନ୍ତୁ ଯାହା ଲାଗି ମୁଁ ଏ ଘରକୁ ଆସିଚି ସେ ଯେ ମୋ ପେଟରେ । ମରିବାର ମୋର କଣ ଅଧିକାର ଅଛି ଏତିକିଣା ?

ଅସ୍ତେ ଅସ୍ତେ ଘରକୁ ଲେଉଟି ଅସେଁ ।

ଅଜ କିନ୍ତୁ ମନେ ହଉଚି, ସେତେବେଳେ ଯଦି ମୁଁ ମରିଥାନ୍ତି, ତାହାହେଲେ କାମ ଛୁଣ୍ଡି ଯାଇଥାନ୍ତା ଏକା ଥରକେ । ଅହୁରି ହିନସ୍ତା, ଅହୁରି ଦାହଗଞ୍ଜ ସ୍ୱାଠୁଁ ବଳି, ଯାହା ମୋ କପାଳରେ ଥିଲା ତାକୁ ଭୋଗ କରନ୍ତା କିଏ ?

ଅଉଦିନେ, ସେ ଦିନ ବି ଏମିତି ଝଡ଼, ଏମିତି ବର୍ଷା । ସାରା ସୃଷ୍ଟି ଉଜାଡ଼ି ଦିବାକୁ ସେଦିନ ଯେମିତି କଳା ବଉଦ ମେଲରେ ପ୍ରଳୟର ଧାରା ଫିଟିଥାଏ । ପାଣି ପବନ ଜୋରରେ ଗଛପତ୍ର ଗୁଡ଼ାକ ଠକ ଠକ ହୋଇ କମ୍ପୁଥାନ୍ତି । ସକାଳୁ ମୋ ସ୍ୱାମୀ କ'ଣ ଗୋଟାଏ ଅଳ୍ପ କଥାରେ ମୋ ଉପରେ ଭାରି ରାଗି କୁଆଡ଼େ ଚାଲି ଯାଇଥିଲେ । ସଞ୍ଜ ଅସି ହୋଇଗଲା; ଘର ବାହାର ଚାହିଁ ଚାହିଁ ଅଖିରୁ ମୋର ପାଣି ମଲା. ସେ ଫେରିଲେ ନାହିଁ । ମୋ ମନ ଭାରି ଉଚାଟ ହୋଇଗଲା । କାହିଁକି ମିଛରେ ତାଙ୍କ କଥାରେ ଜବାବ ଦେଇ ମଲି । ଏତେବେଳଯାଏ କୁଆଡ଼େ ଗଲେ ! କ'ଣ କଲେ ।

ଦାଣ୍ଡ ପିଣ୍ଡାରେ କାହା ପାଟି ଶୁଭିଲା । ସେ ଅସିଲେ କି ଅଉ, ଦଉଡ଼ି ଗଲି ଦାଣ୍ଡ ପିଣ୍ଡାକୁ । କିନ୍ତୁ ସେ କାହାନ୍ତି ? ଏ'ତ ବୃନ୍ଦାବନ !

ମତେ ଦେଖି ବୃନ୍ଦାବନ ଭାରି ବେସ୍ତ ହୋଇ କହିଲେ, ରତ, ଅଲ୍ଅଟା ନେଇ ଅସିଁବୁଟି ବାଡ଼ି ଅଡ଼କୁ । ଦାସ ଭାଇଙ୍କି ବାଟରେ କ'ଣ ଗୋଟାଏ କାମୁଡ଼ି ଦେଲା । ଜଲ୍ଦି ।

ଦଣ୍ଡକେ ଅଖି ଅଗରେ ମତେ ସବୁ ଅନ୍ଧାର ଦିଶିଗଲା । ଭାବିବାର ସେତେବେଳେ ମୋର ଅଉ ବେଳ ନ ଥିଲା । ଘର ଭିତରୁ ଅଲ୍ଅଟା ନେଇ ମୁଁ ପଦାକୁ ବାହାରି ପଡ଼ିଲି, ମୋ ଅଗେ ଅଗେ ବୃନ୍ଦାବନ ।

କ'ଣ କାମୁଡ଼ିଲା, କେମିତ କାମୁଡ଼ିଲା ? ସାପ ହେଇନ୍ଥା ନୁହେଁ ତ ! ଏଇ ଚିନ୍ତା ମୋ ମୁଣ୍ଡରେ ପଶି ବୁଦ୍ଧି ଜ୍ଞାନ ସବୁ ମୋର କୁଆଡ଼େ ହଜାଇ ଦେଲା । ଉଲ୍ଲାସରେ କେତେ ବାଟ ଚାଲି ଆସିଲି ଜଣାଗଲା ନାହିଁ । ହଠାତ୍ ମନେ ହେଲା ମୁଁ କୁଆଡ଼େ ଆସୁଚି ? ଏଟା ଯେ ଗାଁ ଦାଣ୍ଡ, ଅମ ବାଡ଼ି ତ ରହିଲାଣି କେତେ ପଛରେ । ଆଉ ଆଗକୁ ଗଲି ନାହିଁ, ସେଇଠି ଠିଆ ହୋଇ ଡାକିଲି; ବୃନ୍ଦାବନ ଭାଇ !

କାହାନ୍ତି କିଏ ? ଏ ବଣି ବାଟ ଭିତରେ ମୁଁ ଏକା । ଡରରେ ଛାତି ଭିତର ରକ୍ତ ମୋର ପାଣି ହୋଇଗଲା ।

ମେଘ ଛାଡ଼ି ଯାଇଥିଲା ସେତେବେଳକୁ । ବାଟ ଘାଟ ସୁନ୍ଦର କରି ବଉଦ ଫାଙ୍କରେ ସେତେବେଳେ ଚାନ୍ଦମାର ଚୁନ କାମ ହଉଥିଲା ଅନ୍ଧାରର ଶିଉଳିଲଗା ଘରଜରେ । ମନଟାରେ ଖୁବ୍ ହେମତ କରି ଆଖି ବୁଜି ଘର ଆଡ଼କୁ ପଳେଇ ଆସିଲି ଏକା ଦଉଡ଼ରେ । କବାଟ ପାଖେ ଆସି ଥକାହୋଇ ଠିଆ ହୋଇଗଲି ।

ଘର ଭିତରେ ଆଲୁଅ ଜଳୁଛି । ମୋ ସ୍ୱାମୀ ଘର ମଝିରେ ଠିଆ ହୋଇଛନ୍ତି କବାଟ ଆଡ଼କୁ ଚାହିଁ ।

ସାପ ଫାପ କାମୁଡ଼ିବା କଥା ତାହାହେଲେ ସବୁ ମିଛ । ଏତକ ବୃନ୍ଦାବନଙ୍କ ଫିକର ।

ମତେ ଦେଖି ସେ ପାଖକୁ ଆସିଲେ । ରାଗରେ ଦାନ୍ତ କାମୁଡ଼ି ପଚାରିଲେ; କୁଆଡ଼େ ଯାଇଥିଲୁ ସତ କହ ?

ମୋ ମୁଣ୍ଡ ସେତେବେଳକୁ ବୁଲଉଥାଏ । କିଛି କହି ପାରିଲି ନାହିଁ । ସେ ଗର୍ଜନ କରି କହିଲେ, ମୁଁ ସବୁ ଜାଣେ । ଦରକାର ନାହିଁ ଶୁଣିବା । ଚାଲି ଯା ମୋ ଆଗରୁ । ହଠାତ୍ ସେ ମୋତେ ଖୁବ୍ ଜୋରରେ ପଛକୁ ପେଲି ଦେଲେ ।

ଟାଳ ସମ୍ଭାଳି ନ ପାରି ମୁଁ ମୁହଁମାଡ଼ି ପଡ଼ିଗଲି । ଦୁଆର ବନ୍ଧରେ ପେଟଟା ଖୁବ୍ ଜୋରରେ ବାଡ଼େଇ ହୋଇଗଲା ପଡ଼ିଲାବେଳେ । ଘୁଣ୍ଡ ଚିରିହୋଇ ପାଣିଧାର ପରି ପାଟି ବାଟେ ରକ୍ତ ବୋହିଗଲା ଏତକ ମୋର ମନେ ଅଛି, ତା ପରେ ଆଉ କ'ଣ ହେଲା ଜାଣେ ନା, ସାଙ୍ଗେ ସାଙ୍ଗେ ମୋର ଚେତା ହଜିଗଲା । ସେମିତି-ଅଚେତା ଅବସ୍ଥାରେ ପେଟରୁ କୁଆଡ଼େ ମୋର ମଲା ପିଲାଟିଏ ଜନ୍ମ ହେଲା, ତା ସାଙ୍ଗେ ସାଙ୍ଗେ ସନ୍ନିପାତ । ଏତେ କଷ୍ଟରେ ବଞ୍ଚିବା ଆଶା ଯାହା ଟିକେ ଥିଲା, ତା' ବି ଗଲା ।

ତହିଁ ଆରଦିନ ବୃନ୍ଦାବନ ଆଉ ସମ୍ଭାଳି ନ ପାରି ସବୁ କଥା ମୋ ସ୍ୱାମୀଙ୍କ ପାଖେ ମାନିଗଲେ । ସ୍ୱାମୀ ପାଗଳ ପରି ଦୌଡ଼ି ଆସି ମୋ ହାତ ଧରି ଭୋ ଭୋ ହୋଇ କାନ୍ଦି ପକାଇଲେ । କହିଲେ; ରତି ! ଏଇ ଥରକ ମତେ ତୁ କ୍ଷମା ଦେ । ମୁଁ ମଣିଷ ନୁହେଁ— ମୁଁ ପଶୁ । ତାଙ୍କ ବିକଳ ଦେଖି ଏତେ କଷ୍ଟରେ ପୁଣି ବଞ୍ଚିବାକୁ ମୋର ମନହେଲା । କିନ୍ତୁ କ'ଣ ହେବ; ଦିନ ତ ମୋର ସରି ଆସିଥିଲା । ଆଉ ଦଣ୍ଡକ ପରେ ମୋର ସବୁ ଶେଷ ହୋଇଗଲା ।

ପିଲାଙ୍କ ପରି ମତେ ଦି ହାତରେ କୁଣ୍ଢାଇ ଧରି ସେ କହିଲେ ରତି, ରତି ! ଆ ଫେରିଆ, ଆଉ ତୋ ଉପରେ ରାଗିବି ନାଇଁ ଫେରିଆ ।

ସେଇ ଦିନୁ ସେ ପାଗଳ ହୋଇ କୁଆଡ଼େ ଚାଲିଗଲେ ।

ତା ପରେ ମତେ ସମସ୍ତେ ଏଇ ବିଲ ଆରପଟ ମଶାଣିକି ଆଣିଲେ । ମୋର ସେ ମଲା ପିଲାଟିକି ଆଗରୁ ଆଣି ଏଇ ମଶାଣିରେ ଆଉଠାଏ କେଉଁଠି ପୋତିଥିଲେ । ଜୁଇନିଆଁର ସର୍ବଗ୍ରାସୀ ବାହୁ ବେଢ଼ାରେ ଘଡ଼ିକେ ଏ ଦେହ କୁଆଡ଼େ ଜଳିପୋଡ଼ି ପାଉଁଶ ହୋଇଗଲା । ବାକି ରହିଗଲା ଖାଲି ଗୋଟାଏ ଆଲୁଅ; ଏମିତି ମୋର ଦେହ ପରି, ଖୁବ୍ ବଡ଼, ଖୁବ୍ ତେଜ ।

ଆଲୁଅ ଲିଭିଗଲା ।

ଗଛ ଉପରୁ ବାଦୁଡ଼ିଟା ପାଟିକରି ପଚାରିଲା—ସେଥିପାଇଁ, ଅନ୍ଧାର ହେଲେ ବିଲ ପଡ଼ିଆରେ ଆଲୁଅ ପକାଇ ତମରି ପିଲାଟିକି ଖୋଜି ବୁଲନ୍ତି ସବୁଦିନେ ?

ଉତ୍ତର ନାହିଁ । ଆଲୁଅ ସେତେବେଳକୁ ଲିଭି ଯାଇଥିଲା ।

ଚୋଟା ଆଡ଼େ, ଗଛପତ୍ର ଝୁମୁକାଇ ବତାସ ପବନ ଦାହୁଣି ଗଲା ସୁ-ସୁ-ସୁ ... ...



[ 'ବାରୁଣୀ' ବସନ୍ତ ସଂଖ୍ୟା, ୧ମ ବର୍ଷ ୧ମ ସଂଖ୍ୟା, ୧୩୩୩
ଜାନୁୟାରୀ, ୧୯୨୬ ]

କାଳନ୍ଦୀ ଚରଣ ପାଣିଗ୍ରାହୀ

# କିଟ୍‌ଘର ଓ ରେଳଗାଡ଼ି

ଶହ ଶହ ମାଇଲ୍ ଧରି ଦୁଇଟା କଳା କଳା ଲମ୍ବା ଧାରଣା କେଉଁଠାରୁ ଆରମ୍ଭ ହୋଇ ଶେଷ ହୋଇଛି କେଉଁଠାରେ ? ପାଉଁଶବୋଳା ବୈରାଗୀ ପରି ଖଣ୍ଡେ ଧୂଳିଆ କଚ୍ଚା ସଡ଼କ ଏହି ଲମ୍ବା ଧାରଣାକୁ ଡେଇଁ ନିସ୍ପୃହ ଭାବରେ ପଡ଼ି ରହିଛି । ସେହି ଛକ ଜାଗାରେ ରେଳ ରାସ୍ତାର ଦୁଇ କରରେ ଦୁଇଟା ଫାଟକ ସବୁବେଳେ ବନ୍ଦ ଥାଏ ।

ବଳଦଗାଡ଼ି ସବୁ ଧୀରେ ଧୀରେ ଆସି ଫାଟକ ପାଖରେ ଠିଆ ହୁଏ । ଗାଡ଼ିବାଲାମାନେ ଡାକ ଛାଡ଼ନ୍ତି, "ଗଦେଇ ଭାଇ, ଫାଟକ ଫିଟା ।" ଫାଟକଠାରୁ ଦଶ ହାତ ଦୂରରେ ଛହାତ ଲମ୍ବା ଛହାତ ଓସାରର ବାଟ୍ ଘରଟି । ଗାଡ଼ି ସମୟ ଛାଡ଼ି ବାକି ସମୟରୁ ଚଉଦ୍ ପଣ ପହରାବାଲା ଗଦେଇ ମାଝି ସେହି ଘର ଭିତରେ ଥାଏ । କିନ୍ତୁ ଗୋଟାଏ ଡାକରେ ଉତ୍ତର ମିଳେ ନାହିଁ ।

"ମାଷ୍ଟ ବାବୁ" "ଚୌକିଦାର ବାବୁ" ଦୁଇ ତିନିଥର ଡାକ ପରେ ବାଟଘରୁ ଭୁଣ୍ଡ ଶୁଣାଯାଏ—"କିଏ ?"

"ଆମ ଘର ଉତ୍ତରାଣି ।"

"ନାହିଁ, ନାହିଁ, ଗାଡ଼ି ଆସୁଛି ।"

ଗାଡ଼ି ହୁଏତ ଛଘଣ୍ଟା ପରେ ଆସିବ କିମ୍ବା କାଲି ସକାଳେ । ଦୋପହର ଖରାରେ ଶଗଡ଼ିଆର ତାଳୁ ଶୁଖି ଯାଉଛି । ଗୋରୁ ଗୁଡ଼ାକ ଧକେଇଲେଣି; ନ ହେଲେ ଅଧରାତି ଶୀତରେ ରୁମ ଫୁଲାଇ ଠିଆ ହୋଇଛନ୍ତି, ଶଗଡ଼ିଆର ଦାନ୍ତକୁ ଦାନ୍ତ ବାଜୁଛି, ଘଉ—"ନେ, ଗଦେଇ ଭାଇ, ପାନଖିଆ ନେ—ଟିକିଏ ଫିଟେଇ ଦେ ଭଲା ।"

"ଗାଡ଼ି ଆସୁଚି କହୁଛି, ଆଖି ଚିଗର ।"

"କଣ କରିବା ଭାଇ, ବୋଝେଇ ଶଗଡ଼—ପାଞ୍ଚକୋଶ ବାଟରୁ—" ଫାଟକ ଆର ପାଖରୁ ଗଦେଇ ହାତ ବଢ଼ାଏ—"ଦିଅ, କ'ଣ ଦଉଚ ଆଣ ।" ଅଧଲାଏ ପାହୁଲାଏ—ନାହିଁ ନାହିଁ—ଦି ପଇସା ।

ଫାଟକ ଖୋଲିଯାଏ ଗୁଡ଼ି ପାଞ୍ଚଟା ଶଗଡ଼ କଟକଟ ଶବ୍ଦ କରି ସିଡ଼ି ପାରି ହୋଇଯାଏ । ପୁଣି ସବୁଆଡ଼େ ଶୁନ ଶାନ । ଏହି କାମରେ ଗଦେଇର ମୁଣ୍ଡ ଚନ୍ଦା ହୋଇ ଗଲଣି । ଆଖପାଖ ପନ୍ଦରଖଣ୍ଡ ଗାଁରେ ତାକୁ ନ ଚିହ୍ନି କେହି ନାହିଁ ।

ଏକୁଟିଆ ବାଟଘରଟି । ପଛଆଡ଼େ ଝାଙ୍ଗର ଭୂଇଁ ଠାଏ ଠାଏ ଗୋଟାଏ ଛୋଟ ମୁଣ୍ଡିଆ ପୃଥିବୀର କଙ୍କାଳପରି ବାହାରି ପଡ଼ିଛି । ବହୁତ ତଳେ ଗୋଟାଏ ପାହାଡ଼ର ପାଦେଶ ଦୂରରୁ ପାଉଁଶିଆ ଦିଶେ । ରେଳ ଧାରଣା ଦୁଇଟାକୁ ଡେଇଁ ଆଗକୁ ଗଲେ ବାଲି ପରେ ବାଲି—କେବଳ ବାଲି ।

ମଙ୍ଗୁଳି ସ୍ୱାଇଁ ବାଲି ମଝିରେ ହଳ ଠିଆ କରି କଳେ ଚିଲମ ଟାଣି ଦେବାକୁ ଗଦେଇ ପାଖକୁ ଆସେ । ରେଲବାଇ କାମ । ଚିଲମ ସଜାଡି

ନ ରଖିଲେ ଗଦେଇ ଦିନରାତି ଖଟିବ କେମିତି ? ଗଞ୍ଜେଇ ମଲୁମଲୁ ଗାଁ ଗଞ୍ଜା କେତେ କଥା ପଡ଼େ ।

"ଗଦେଇ ଭାଇ, ଗାନ୍ଧି ଅମଳରେ ସବୁ ଶସ୍ତା ହେଲା, ଗଞ୍ଜେଇ ଭାଉ ତ କାହିଁ ଖସିଲା ନାହିଁ ।"

"ଆରେ ଗାନ୍ଧି ଫାନ୍ଧି କିଏ କୁଆଡ଼େ ଗଲେଣିମ । ଶସ୍ତା ମହଙ୍ଗ ଗାନ୍ଧି ହାତରେ ଅଛି ନା ସରକାର ହାତରେ ଅଛି ?"

ମଙ୍ଗୁଲି ଗୋଟାଏ ଲମ୍ବା ସୁଡ଼ୁକାରେ ଚିଲମରୁ ଧୂଆଁ ଶୋଷିନିଏ । ତାହାର ଆଖି ଦୁଇଟା ମୁଦି ହୋଇଯାଏ, ଗଳାରୁ ଶିରା ଗୁଡ଼ାକ ଟାଣି ହୋଇ ଚମଡ଼ା ତଳୁ ବାହାରି ପଡ଼େ, ଚିଲମଟା ଗଦେଇ ହାତକୁ ବଢ଼ାଇ ଦେଇ ନାକ ଓ ପାଟି ବାଟେ ଫସ୍ ଫସ୍ କରି ଧୂଆଁ କାଢ଼ୁ କାଢ଼ୁ କହେ, "ସରକାର କଣ ସଜରେ ଅଛି ଯେ ଗାନ୍ଧି ତାକୁ ଟାଳିଦେବ । ଏଇ ଆଗ ଗୋଟାଏ କଥା ଦେଖିଲ, ଏ ଯେଉଁ ରେଳବାଇ ଚଳାଇଛି—"

ଜହ୍ନ ଆସି ମଝିରେ କହେ, "ବାପା, ତୋରାଣି ପିଇବୁ ପରା ! ଗଦେଇ ମାଝିର ସଂସାରରେ ଜହ୍ନ ଛଡ଼ା ଆଉ କେହି ନାହିଁ । ଯାହା କହନ୍ତି ଏକରୁ ଦୁଇ ନାହିଁ, ଛୁଇଁଗଲେ ଗଇଁଠେଇବାକୁ ନାହିଁ । ଚିଲମ ପଛକୁ ଗଦେଇ ଯଦି ଆଉ କାହାକୁ ଭଲପାଏ ତ ସେ ଜହ୍ନ । ଜହ୍ନ କାହାକୁ ଭଲପାଏ କେଜାଣି; କିନ୍ତୁ ଗଦେଇ ଆଗରେ ଖାଲି ତାହାର ମାଆର ଉଲୁଗା ଦିଏ । ମାକୁ ଏତେ ଭଲ ପାଇବାର କାରଣ ସେ ତାକୁ କେବେହେଲେ ଦେଖିନାହିଁ, ଗଦେଇ ହସେ, "ଇଲେ, ତୋର ପୁଣି ମାଆ କିଏ ? ସେ'ତ ତୋର ଜନମ ଆଗରୁ ମରିଛି ।"

ସେ ଦିନ ସକାଳେ ବାସି ଆଉଟ ସାରି ଜହ୍ନ ବାପାକୁ ଉଠାଇବାକୁ ଗଲାବେଳକୁ ଗଦେଇ ବୁଢ଼ା ଧୋଡ଼ଧାଡ଼ ହୋଇ ହୁ ହୁ କମ୍ପୁଛି, ଜହ୍ନ ହାତଦେଇ ଦେଖିଲା, ଦେହରେ ତାହାର ଖଇ

ଫୁଟୁଛି । ଜୀବନର ୧୮ ବର୍ଷ ଭିତରେ ଜହ୍ନର ହେତୁ ହେବାଠାରୁ ସେ ଧନେହେଲେ ବାପାଙ୍କୁ ଏମିତି ଦେଖିନାହିଁ । କେତେବେଳେ କମିତି ଦେହ ମନ୍ଦ ଟିକିଏ ହୁଏ, ସେଥିରେ ଗଦେଇର କାମ ବନ୍ଦ ହୋଇ ନାହିଁ ।

ଜହ୍ନ ବର୍ଷ୍ଵରକୁହିଁ ନୂଆ କରି ଫାଟକ ବନ୍ଦ କରିବା, ଫାଟକ ଫିଟାଇବା ଓ ଗାଡ଼ି ଆସିଲାବେଳେ ନେଳି ପତାକା ଧରି ଠିଆ ହେବାକୁ ପଡ଼ିଲା । ଆଗେ ସେ ନୂଆବୋହୂଟି ପରି ଗାଡ଼ିକୁ ଲୁଚିକରି ରହୁଥିଲା । ଅଧେ ଦେହ ଘର ଭିତରେ ଓ ଅଧେ ପଦାକୁ କାଢ଼ି କବାଟ ଧରି ଚାହିଁ ରହେ । ସ୍ଵତରେ ଗଦେଇ ଯେତେବେଳେ ନାଁ ଡୁଲଟାଏ ଧରି ଗାଡ଼ି ପାଖରେ ଠିଆ ହୁଏ ଏବଂ ବଡ଼ ଘରଟାରେ ସ୍ଵିତମତ ଭୂମିକମ୍ପ ଆରମ୍ଭ ହୋଇଥାଏ, ସେତେବେଳେ ତାକୁ ନିଘମ ନିଦ । ଏଇଲାଗେ ଜହ୍ନକୁ ଦିନରାତି ଗାଡ଼ି ଜଗିବାକୁ ପଡ଼ିଲା । ତାହା ଉପରେ ଗଦେଇ ବୁଢ଼ାର ଘଡ଼ି ଘଡ଼ିକେ ଡାକରା । ସବୁବେଳେ ଅଇ ଉଠୁଛି । ତୁଣ୍ଡାଭଜା କି ତୋରାଣି କିଛି ହେଲେ ମୁହଁରେ ଦେଉ ନାହିଁ ।

ବେଳ ରତ ଚଡ଼ି ହୋଇ ଆସୁଛି । ଅଶିଣ ମାସ ଆକାଶଟା ଭାରି ସଫା । ଦୂର ପାହାଡ଼ ଗୁଡ଼ିକ କିଏ ଯେମିତି ଧୋଇ ଧାଇ ଖଣ୍ଡେ ଓଦା କନାରେ ପୋଛି ସଜେଇ ରଖି ଦେଇଛି । ତାହାର ଉପରୁ ଫାଳେ ସୂର୍ଯ୍ୟ ଦେଖା ଯାଉଛି ଏବଂ ବାସି ଧୋବ ଲୁଗାପରି ଖଣ୍ଡେ ଧଳା ବଉଦ ତାହାର ସୁନା ଜରିର ଧଡ଼ିଟାକୁ ସୂର୍ଯ୍ୟ ଆଗରେ ଧରିଛି । ଜହ୍ନ ସିଆଡ଼େ ଟିକିଏ ଆଖି ପକେଇ ଦେଇ ଗାଡ଼ି ଆସିବାକୁ ଚାହିଁ ରହିଲା । ଦେହରେ ଖଣ୍ଡିଏ ହଳଦିଆ କସ୍ତା । ସେହି ଜରି ଧଡ଼ିଆ ମେଘଟାର ଛାଇ ତାହାର ଲୁଗା ଉପରେ ପଡ଼ିଛି ।

ବହୁତ ଦୂରରୁ ଗାଡ଼ିର ଶବ୍ଦ ଶୁଣାଗଲା, ଜଙ୍ଗଲ ଭିତରୁ ଗାଡ଼ିର ଧୂଆଁ କୁଣ୍ଡଳୀ ହୋଇ ଫୁଲହାର ଧରି ଆକାଶ ତଳେ ଝୁଲି ପଡ଼ୁଛି । ଶେଷକୁ ଲାଇନ ଉପରେ କଟକଟ ହୋଇ ଉଠିଲା । ଗାଡ଼ି ଚାଲି ଯିବା ବେଳକୁ କିଏ ଗୋଟାଏ ଖଟ୍ କରି ତା ଗୋଡ଼ ପାଖରେ ପଡ଼ିଲା, ଜହ୍ନ ଦେଖିଲା ଗୋଟାଏ କାଗଜ ପୁଡ଼ା । ସେତେବେଳେ ଗାଡ଼ିର ପଛ ପାଙ୍ଗଟା ଛୋଟ ହୋଇ ଧୀରେ ଧୀରେ ଦୂର ଗଛ ଉହାଡ଼ରେ ମିଶି ଯାଉଛି ।

ପୁଡ଼ାଟାକୁ ଧରି ଖୁସି ଓ କୌତୁକରେ ବାପ ଆଗରେ ଯାଇ ଫିଟାଇ ଦେଖେ ତ ଦୁଇଟା ସୁରଙ୍ଗୀ କମଳା । ଗୋଟାଏ କାନରେ ଜାକିଦେଇ ଗଦେଇ କହିଲା, "ଏତ ଖାଲି ଅମୁରୁତ ଲୋ ଝିଅ ।" ସେ ଅବଶ୍ୟ ଅମୃତ କେବେ ଚାଖି ନାହିଁ ।

ଗଦେଇ ଭାବିଲା, ତାହାର ଅରୁଚି ଛଡ଼େଇବା ପାଇଁ ଏତକ ତାକୁ ଦିଅଁ ଦେଲେ । ଜହ୍ନ ଭାବିଲା କାହା ହାତରୁ କେମିତି ଖସି ପଡ଼ିଥିବ । କିନ୍ତୁ ରୋଜ ଯେତେବେଳେ ନୂଆ ନୂଆ ଫଳମାନ ମିଳିଲା ସେତେବେଳେ ଗଦେଇର ଭୟ ହେଲା । ଜହ୍ନକୁ ମନା କରିଦେଲା କଥାଟାକୁ ବାହାର ନ କରିବା ପାଇଁ ।

ଜହ୍ନର କିନ୍ତୁ ମନ ଭିତରର ଗୋଟାଏ ଜାଗା ମମତାରେ ତରଳି ଯାଇ ଢଳ ଢଳ ହୋଇ ଉଠିଛି । ସେ ମମତା ଜଣେ କେହି ପୁରୁଷ ପାଇଁ ନୁହେଁ, କି ନାରୀ ପାଇଁ ନୁହେଁ—ଗୋଟାସୁଦ୍ଧା ପାସେଞ୍ଜର ଗାଡ଼ି ପାଇଁ । ତାହାର ଇଞ୍ଜିନ୍, ତାହାର ଧୂଆଁ, ତାହାର କଳା ମସିଆ ଡ୍ରାଇଭର, ଟେଢ଼ା ଆଖିଆ ଗାର୍ଡ, ପାଞ୍ଚଶହ ଆରୋହୀଙ୍କ ଘେନି ସମସ୍ତ ପ୍ୟାସେଞ୍ଜର ଗାଡ଼ିଟାକୁ ଜହ୍ନ ଅଜା ପ୍ରାଣ ଦେଇ ଭଲ ପାଇ ବସିଛି । ତାହାର ଥିର ଥିର ଚାଲି, ବଙ୍କା ଢଙ୍କା ଭଙ୍ଗୀ ଜହ୍ନ ପାଖରେ ଗୋଟିଏ ଛୋଟ ପିଲା ପରି ପ୍ରେମର ପାତ୍ର । ଡାକଗାଡ଼ି, ମାଲଗାଡ଼ି

ପ୍ରଭୃତି ସବୁଦିନ ପରି ଯା’ ଆସ କରେ । କିନ୍ତୁ କଲିକତାରୁ ଯେଉଁ ପ୍ୟାସେଞ୍ଜର ଆସେ ପାଞ୍ଚମାଇଲ ଦୂରରୁ ତାହାର ଶବ୍ଦ ଶୁଣିଲେ ଜହ୍ନର ଛାତି ଥରି ଉଠେ । ଇଞ୍ଜିନ୍‌ରୁ ଆରମ୍ଭ କରି ଗାର୍ଡ଼ଘର ପର୍ଯ୍ୟନ୍ତ ସବୁ ଡବା ଗୁଡ଼ିକ ତାହାର ନଜର ଉପରେ ଗୋଟି ଗୋଟି ହୋଇ ଭେଇଁଯାଏ । ଗାଡ଼ିର ଝରକା ଭିତରୁ କେତେ କଳା କଳା ମୁଣ୍ଡ ଆଖି ପିଛୁଡ଼ାରେ ଉଭେଇ ଯାଏ । ଗାଡ଼ି ଦୁଆର ଖୋଲି କିଏ ଜଣେ ତାହା ଆଗରେ ଖଣ୍ଡେ ଛୁଟକନା ଉଡ଼ାଇ ଦିଏ । ଜହ୍ନ ଦେଖେ କଳା ଟୋପର ଲଗା ଟୋକାଟିଏ ତାକୁ ଚାହିଁ ହସୁଛି । ଜହ୍ନ ମଧ୍ୟ ହସି ଦିଏ ଏବଂ ବାସ୍ତୁରେ ଏହି ଟୋକା ତାକୁ ଫାଲ ଦେଉଛି ପରା । କିନ୍ତୁ ସେ ଭଲପାଏ ଗୋଟେ ବୁଢ଼ା ପ୍ୟାସେଞ୍ଜର ଗାଡ଼ିଟିକୁ; ତାହାର ଇଞ୍ଜିନ୍, ତାହାର ଧୂଆଁ, ତାହାର କଳା ମସିଆ ଡ୍ରାଇଭର, ଟେରା ଆଖିଆ ଗାର୍ଡ଼ ଓ ପାଞ୍ଚଶହ ଆରୋହୀ । ରେଳ ସଡ଼କ କଡ଼ରେ ଗୋଟିଏ ସରୁ ଚଲାବାଟ । ତାହାର ଉପରେ ଜଣେ ଅଧେ ଲୋକ ଯା’ ଆସ କରନ୍ତି । ଦିଓଟି ଗୋଟେ ମାଇପେ ମାଣିଆବନ୍ଧ ଲୁଗାପିନ୍ଧି, କାହା ପାଖରେ ପିଲାଟିଏ, କିଏ ହଳଦୀ ମଥାଘଷା ବୋଲିହୋଇ ଜଣେ ବୁଢ଼ୀଅଳକା ଜାଉଁଳିପକା ମରଦ ପଛରେ ଚାଲିଛି । ଖରାବେଳେ ଦିଏ କେମିତି ଆସି ବାଟଘର ପାଖ କନିଅର ଗଛମୂଳେ ବସି ପଡ଼ନ୍ତି । ମାଇପିଟିଏ ଦେଖିଲେ ଜହ୍ନ ଯାଇ ତାହାର ବାପଘର, ଶାଶୁଘର କଥା ପଚାରେ ।

ମଝିରେ ମଝିରେ ଲାଇନ୍‌ବାବୁ ଚାରି ଚକିଆ ଠେଲାଗାଡ଼ି ଖଣ୍ଡରେ ଚଢ଼ି ନାଲି ପତାକାଟା ଉଡ଼ାଇ ବାଟଘର ଆଗରେ ଚାଲିଯାଏ, ଗଦେଇ ବେମାର ଥିବାରୁ ଲୁକୁଡ଼ା ବରଦ କରି ପାରେ ନାହିଁ, ଲାଇନ୍‌ବାବୁଙ୍କ ପୋଷାକ ଓ ଚାଲିରେ ସାହେବିଆନା ଥିଲେହେଁ ଦେହର ରଙ୍ଗଟାରେ ନାହିଁ । ସାହେବ ହେବାର କ୍ଷୀଣ ସ୍ମୃତି ଉପରେ

ଓଠ ଯୋଡ଼ିକ ଖାଲି ଫୁଲ ଛଡ଼ରେ ଧଳା ହୋଇ ପଡ଼ୁଛି । ଦୂରରୁ ନାଲି ପତାକା ଦେଖି ଗଡ଼େଇ କହେ, "ଯା ମଙ୍ଗୁଳି, ହଳପାଖକୁ, ଚଣ୍ଡି ଗୁମଣ୍ଡା ଆସିଲେଣି, କୁକୁଡ଼ା ବଳି ମାଗିବେ ।" ଆଗେ ଆଗେ ଲାଇନ୍ ବାବୁଙ୍କୁ ଦେଖି ଜହ୍ନାକୁ ଅନ୍ଧାର ରାତି ପରି ଡର ମାଡ଼ୁଥିଲା । ଆଜିକାଲି ତାକୁ ଡର ଭୟ ନାହିଁ । ପ୍ୟାସେଞ୍ଜର ଗାଡ଼ିଟା ତାକୁ କମଳା ଲେମ୍ବୁ ସଙ୍ଗେ ସଙ୍ଗେ ଅଭୟ ମଧ୍ୟ ଦେଇଛି ।

...

ବି. ଏନ୍. ଆର୍. ର ପ୍ୟାସେଞ୍ଜର ହଡ଼ା ବଳଦ ପରି ଥରି ଥକେଇ ଥକେଇ ଚାଲେ । ପାଞ୍ଚ ମାଇଲ୍‌ରେ ଠିକଏ ବିଶ୍ରାମ ନିଏ । ସବୁ ଷ୍ଟେସନରେ କାନ୍ଧରେ ଫଳ ଝୁଡ଼ିଟା ଥୋଇ ଏବଂ ହାତରେ ସୋଡ଼ା ବୋତଲ ଧରି 'ଚା-ଗରମ' 'ବିଡ଼ି ସିଗାରେଟ' 'ଆରେ ନାଥିଆ', 'ହେ କୁଲି', ଭିତରେ ଦାମ ବିଚାରିବାକୁ ଗାଡ଼ିଟାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଥରେ ଡାକ ପିବାକୁ ହୁଏ—ସୋଡ଼ା, କେଲ୍ନ—ପିଆରା ।

ଦିନେ ଛଡ଼ା ପୁରୀ କଲିକତା । ବେଶ ଚଳନ୍ତ ଜୀବନ । ଦାମକୁ ବୋଧହୁଏ, ଜଗତ ଗୋଟାକ ସ୍ଥିର ରହିଛି, ସେହି କେବଳ ରୋଜନା ଦଉଡ଼ୁଛି । ଏହି ଦୌଡ଼ିବା ଭିତରେ ହଠାତ୍ ଦିନେ ଟାଙ୍ଗର ଭୂଇଁରେ ଚମ୍ପା କଡ଼ି ପରି ଜହ୍ନର ମୁହଁ ତାହାର ଆଖି ଆଗରେ ପଡ଼ିଲା । ସ୍କୁଲ ମାଲିକଙ୍କୁ ଲୁଚାଇ ନିତି ଏହି ରୂପର ଦାନ ଦେବାକୁ ସେ ଭୁଲିଲା ନାହିଁ । ପ୍ରତିଦିନ ସେହି ହସ ଟିକିଏ ଦେଖିବାକୁ ସେ ନିମକ ହାରାମ ହେବାକୁ ଡରିଲା ନାହିଁ ! ଉଃ ! କେତେ କମଳା ଅଙ୍ଗୁର ତ ସଢ଼ି ଯାଉଛି, କେତେ ଖରା ଶୀତରେ ଦେହଟାକୁ ପୁଆଇ ସେ କାମ କରୁଛି—କଏ ତା'ର ଅଛି କାହାକୁ ସେ କଣ ଦିଏ—ଏହି ଝିଅଟିକୁ ଅବା ଦିଟା ପୁଞ୍ଜାଏ ଫଳ ଦେଲା ।

ଆଜି ଦରମାଟି ପାଇ କଲିକତାରୁ ସେ କେତେଟା ଭଲ ଭଲ ଜିନିଷ କିଣି ଆଣିଛି । ସେଠେଇ ଫଳ ସାଥିରେ ଖଣ୍ଡେ ଶାଢ଼ୀ ମଧ୍ୟ କିଣି ଗୋଟିଏ ବଡ ପୁଡ଼ିଆରେ ଭଲ କରି ବାନ୍ଧିଛି । ସେଇଅଛି ଏହି ଜିନିଷତକ ଦେଖି ଭାରି ଖୁସି ହେବ । ଦାମ ରେଲ ଦରଜା ଖୋଲି ପୁଡ଼ିଆଟି ଧରି ଠିଆ ହୋଇଛି । ମନେ ମନେ ଭାବୁଛି, ଏମିତି ଖାଲି ପୁରୀ କଲିକତା ହୋଇ କ'ଣ ତାହାର ଦିନ କଟିବ । ତାହାର ବେଶୀ କିଛି ଲୋଡ଼ା ନାହିଁ । ଏହିଭଳି ଖଣ୍ଡିଏ ସ୍ଲେଟଘର ଓ ଜହ୍ନ ପରି ଗୋଟିଏ ସୁନ୍ଦର ଝିଅ । ବାଃ ! ଏପରି ଭୂତ ଦଉଡ଼ା ଠାରୁ ସେଥିରେ କେତେ ସୁଖ ।

ଦିନରାତି ଚବିଶ ଘଣ୍ଟା ଭିତରେ ସେ ଦୁଇଶହ କୋଶ ବାଟ ଯା'ଆସ କରେ । ପ୍ରତି ଷ୍ଟେସନରେ ଗାଡ଼ି ଠିଆ ହୁଏ । ପ୍ରତି ଷ୍ଟେସନରେ କେତେ ଲୋକ ଓହ୍ଲାଇ ଯାନ୍ତି, କେତେ ଲୋକ ଉଠନ୍ତି । କେତେ ସୁନ୍ଦର ମୁହଁ ଓଢ଼ଣା ତଳେ ଲୁଚି ରହେ । ଲହୁଣୀପରି କେତେ ଧଳା ଧଳା କଅଁଳ ପାଦ ଉପରେ ଝଲମଲ ଶାଢ଼ିର ଧଡ଼ି ଝୁଲୁଥାଏ । ଦାମ ସେ ସବୁକୁ ଚାହିଁ ନ ଚାହିଁଲା ପରି ଗାଡ଼ିର ଏ ପାଖରୁ ସେ ପାଖ ଯାଏ ଖାଲି ଡାକୁଥାଏ—ସୋଡ଼ା—ଲେମ—ପି-ଆ-ଜ୍ ।

ଗାଡ଼ି ଚାଲିଲାବେଳେ ବାଟରେ ଘାଟରେ ଗାଧୁଆ ତୁଠରେ କେତେ ସୁନ୍ଦର ମୁହଁ ନିତି ଦାମ ଆଖିରେ ପଡ଼େ । କିନ୍ତୁ ମନେହୁଏ, ସବୁ ସୁନ୍ଦର ମୁହଁ ଯେପରି ଜହ୍ନଠାରେ ଠୁଳ ହୋଇଛି । କେତେ ପାହାଡ଼ ଜଙ୍ଗଲ କାଟି ଗାଡ଼ି ଚାଲିଛି । ସବୁ ଜାଗା ଗୁଡ଼ାକ ସାଥିରେ ଦାମର ଭଲ ଚିହ୍ନା ପରିଚୟ । ଆଜି ସେ ସବୁକୁ ଦେଖି ମଧ୍ୟ ସେ ଦେଖୁ ନାହିଁ । ନେଳି ପତାକାଟି ଧରି ଜହ୍ନ ଠିଆ ହୋଇଥିବାର ବହୁତ ଦୂରରୁ ତାର ଆଖି ଆଗରେ ପଡ଼ିଲା ।

ଦୂର ପାହାଡ଼ ତଳେ ସୂର୍ଯ୍ୟ ଅସ୍ତ ହୋଇଛି; କିନ୍ତୁ ପିଚକାରି ମାରିଲାପରି ପଶ୍ଚିମ ଆକାଶଟାକୁ ନାଲ୍‌ କରି ଦେଇଛି । ତାହାରି ଆଗରେ ଖଣ୍ଡେ ହଳଦିଆ କମ୍ବାପିନ୍ଧ ଓ ନେଲି ପତାକାଟି ଧରି ଜହ୍ନ ଗୋଟିଏ ଛବି ପରି ଠିଆ ହୋଇ ହସୁଛି । ଦାମ ସେହି ହସକୁ ଲୋଲୁପ ଆଖିରେ କେତେବେଳ ଯାଏ ଚାହିଁ ରହିଥିଲା, ତାହା ସେ ଜାଣେ ନାହିଁ, କିନ୍ତୁ ଗାଡ଼ିଟା ବାଟଘର ଡେଇଁଯିବା ପରେ ହଠାତ୍ ତାହାର ଖିଆଲ ହେଲା, ଝୁଲିପଡ଼ି ସେ ଜହ୍ନ ଆଡ଼କୁ ଚାହିଁଲା କିନ୍ତୁ ଗୋଡ଼ ଦୁଇଟାକୁ ଗାଡ଼ି ଉପରେ ସିଧାକରି ରଖି ପାରିଲା ନାହିଁ ।

ଗାଡ଼ିଟା ଖଣ୍ଡେ ଦୂର ଯାଇ ଠିଆ ହୋଇଗଲା । ଗାର୍ଡସାହେବ ଏବଂ ଗାଡ଼ି ଭିତରୁ ଆଉ କେତେ ଲୋକ ଓହ୍ଲାଇ ପଡ଼ି ଦୌଡ଼ା ଦୌଡ଼ି କଲେ । ଜହ୍ନ ବିଚାରି କିଛି ବୁଝି ପାରିଲା ନାହିଁ । ଗାଡ଼ିଟାକୁ ଏହି ପହିଲି ଥର ଠିଆ ହେବାର ଦେଖି, ତାହାର ଚକ କେମିତି, ଦରଜା କେଉଁଠି ଓ ଝରକା କେତୋଟା ଗଣିବାକୁ ଲାଗିଲା ।

କିନ୍ତୁ ବାଟଘରର ଅଳ୍ପ ଦୂରରେ ଲୋକେ ଯେତେବେଳେ ଜମା ହୋଇଗଲେ, ଜହ୍ନର ଆଖି ସେହି ଆଡ଼କୁ ପଡ଼ିଲା । ଦାମର କୁରିା ଖଣ୍ଡ ରକ୍ତରେ ସୁଡ଼ୁବୁଡ଼ୁ । ତାଳୁ ଫାଟି ରକ୍ତଧାରି ବୋହି ଆସି ପାଟିରେ ଲାଗିଛି । ମୁଣ୍ଡର କଳାବାଳ ଗୁଡ଼ାକ ଲହୁରେ ଲଟପଟ ହୋଇ ବଡ ବିକଳ ଦିଶୁଛି । ଦୁଇଜଣ ଲୋକ ଧରାଧରି କରି ତାକୁ ଗାଡ଼ି ଭିତରକୁ ଉଠାଇଲେ । କାଗଜ ପୁଡ଼ାଟାକୁ ଜହ୍ନ ଆଉ ଦେଖି ପାରିନାହିଁ । ଅସ୍ତେ ଅସ୍ତେ ଗାଡ଼ି ଛାଡ଼ି ଦେଲା ।

ଗାଡ଼ି ଯିବା ପରେ ଲୋକେ ଜୁଣ୍ଡ ହୋଇଥିବା ଥାନକୁ ଜହ୍ନ ଚାଲି ଚାଲି ଗଲା । ଠାଙ୍ଗର ଉପରେ ଦାମର କଞ୍ଚା ଲହୁ ମନ୍ଦା ମନ୍ଦା ହୋଇ ପଡ଼ିଛି । ଏକା ନଜରରେ ସେହି ରକ୍ତ ଓଦା ଭୂଇଁ ଖଣ୍ଡକୁ ସେ କାବା ହୋଇ ଚାହିଁ ରହିଲା ·········

ଗଦେଇ ମାଝି ବଠ୍ ଘର ଭିତରୁ ଥର ଥର ଗଳାରେ ଡାକିଲା, "କିଏଲେ ଝିଅ, କ'ଣ କି ?"

ଚମକି ପଡ଼ି ସେ ଧୀରେ ଧୀରେ ବାପ ପାଖକୁ ଚାଲିଗଲା ।



[ 'ଯୁଗବାଣୀ' ୨ୟ ଭାଗ, ୨ୟ । ୩ୟ ସଂଖ୍ୟା, ଜ୍ୟେଷ୍ଠ । ଆଷାଢ଼ ୧୩୪୧, ମଇ ଓ ଜୁନ ୧୯୩୪ ]

କାଳପ୍ରସନ୍ନ କବ

# ତ୍ରିବେଣୀ ସଙ୍ଗମେ

---

ବାସନ୍ତିକାର ଗଳାରେ ସଜ ଫୁଟା ଲକ୍ଷ ଫୁଲର ହାର ଝୁଲୁଛି । ପ୍ରକୃତିର ଦୁଲାଳ ଦୁଲାଳୀ ବିହଗ ବିହଗୀର କୂଜନ ଗୀତି ଚାନ୍ଦନୀ-ରାତିର ପ୍ରଥମ ଯାମରେ ଏସ୍‌ରାଜର ପ୍ରାଣ ମତାଣିଆ ମୋହନୀୟ ସ୍ୱର ମାଧୁର୍ଯ୍ୟ ପରି ନୀଳ ଆକାଶର ଅସୀମ କୋଳରେ ପୂରି ରହୁଛି । All India Swadeshi Exhibition ( ଅଲ୍ ଇଣ୍ଡିଆ ସ୍ୱଦେଶୀ ଏକ୍‌ଜିବିସନ୍ ) ବସିଛି 'ଅମିନା ବାଗ'ରେ । କାଲି ପୁଣି ଏଠାରେ ଆସି ପହଞ୍ଚିବେ କବୀନ୍ଦ୍ର ରବୀନ୍ଦ୍ରନାଥ, ଲକ୍ଷ୍ନୌ ଓ କ୍ରିଶ୍ଚିଆନ କଲେଜ ୟୁନିୟନର ସାହିତ୍ୟ ସଭାର ସଭାପତି ହୋଇ । ବିଭିନ୍ନ ସ୍ଥାନରୁ ଅନେକ ସାହିତ୍ୟିକଙ୍କର ଶୁଭାଗମନ ଘଟିଛି । ସୁଯୋଗ ପାଇ ଉତ୍କଳ ସାହିତ୍ୟର ଅତୀତ ଇତିହାସ କହିବା ପାଇଁ ମୁଁ ମଧ୍ୟ ପ୍ରସ୍ତୁତ ହେଉଛି । ଖବର ଆସିଲା, କବି ସମ୍ରାଟ ମିରାଟ୍‌ରେ ଅସୁସ୍ଥ; ସୁତରାଂ ସେ ଏ ଯାତ୍ରାରେ ଆସି ପାରିବେ ନାହିଁ । ସବୁ

ଉତ୍ସାହ ଅପେ ଅପେ ନିଭିଗଲା । ୭ଟା ଗାଡ଼ିରେ ଅନେକେ ଚାହାଁରି ପଡ଼ିଲେ । ମୁଁ ମଧ୍ୟ ସେମାନଙ୍କର ସଙ୍ଗୀ ହେଲି । ବେନାରସ, କାନ୍‌ପୁର, ଲକ୍ଷ୍ନୌ ବୁଲି ବୁଲି କ୍ଲାନ୍ତ ହୋଇ ପଡିଥିଲି । ଲକ୍ଷ୍ନୌର ଦ୍ରଷ୍ଟବ୍ୟ ସମସ୍ତ ନିଃଶେଷ କରି ପଡି ରହିଥିଲି ସୁଦୂର ବିଦେଶରେ, କେବଳ କବୀନ୍ଦ୍ରଙ୍କ ଶୁଭାଗମ ଶୁଣି । ତାଙ୍କ ଆସିବା ଘଟିବ ନାହିଁ ଜାଣି ଘରର ମାୟା ତାର ସ୍ୱରରେ ଡାକ ଦେଲା—"ଆ, ଆ, ଆ । ବସନ୍ତ ଜାଗ୍ରତ ଦ୍ୱାରରେ ।"

ଏଲାହାବାଦ ଷ୍ଟେସନରେ ପହଞ୍ଚିବା ମାତ୍ରକେ କେତେକ କବିଙ୍କ ଗୀତମାଳା ମନେ ପଡ଼ିଲା । ମନେ ପଡ଼ିଲା ଗଙ୍ଗା ଯମୁନାର ମିଳନ କ୍ଷେତ୍ର । ଓହ୍ଲାଇ ପଡିଲି । ସମୟ ୮ ଘଣ୍ଟା ମାତ୍ର । ଏଥି ମଧ୍ୟରେ ପୁଣି ଫେରି ଆସି ଗାଡି ଧରିବାକୁ ପଡିବ ।

ଗଙ୍ଗା ଯମୁନାର ମିଳନ କ୍ଷେତ୍ର ବାସ୍ତବିକ ଅପୂର୍ବ, ଅବ୍ୟକ୍ତ, ଅଚିନ୍ତ୍ୟ ମାଧୁରିମାମୟ । ଠିକ୍ ଯେପରି କାକ ଜହ୍ନିଆ ଆଲୁଅ ପାଖରେ ଦିଗନ୍ତ ବିସ୍ତାରି ନୀଳ ଅଞ୍ଚଳ ବିଛାଇ ବସିଛି କେଉଁ ତରୁଣୀ ରୂପସୀ ! କି ମହନୀୟ ଏ ନୀଳଯମୁନାର କ୍ଷୁଦ୍ର ତରଙ୍ଗମାଳା । ଏଡେଣୁ ସିନା ନୀଳ ଯମୁନାର ଶ୍ୟାମଳ କୂଳରେ ଶ୍ୟାମନାମାର ସବୁଭୁଲା ମୋହନ ବେଣୁ ବାଜି ଉଠିଥିଲା ଘନ ଘନ । ସଙ୍ଗେ ସଙ୍ଗେ ଶୁଭୁଥିଲା ଶ୍ରୀରାଧାର ଚିରନ୍ତନୀ ନୂପୁର ବାଜଣା—ରଣି, ରଣି, ଝଁଣ, ଝଁଣ ।

ସଙ୍ଗମ ତୀର୍ଥରେ ସ୍ନାନ କରି ପଛକୁ ଫେରି ଦେଖେ, ବନ୍ଧୁ ପରେଶନାଥ ପରି କିଏ ସେ ଜଣେ । ଚମକି ଉଠିଲି—Mr. P. Jena । ହଁ ତାଙ୍କର ପରି ଦିଶୁଛି ତ, କିନ୍ତୁ ଏ କି ବେଶଭୂଷା ତାର ? କାହିଁଗଲା ସବୁ ମୂଲ୍ୟବାନ ସାହେବୀ ପୋଷାକ, କାହିଁଗଲା ବିଳାସିତାର ଚରମ ଉପାଦାନ ସବୁ ?

ଦେହରେ ରହିଛି ଖଣ୍ଡିଏ ଅତି ସାଧାରଣ ଖଦଡ ପଞ୍ଜାବୀ, ପରିଧାନରେ ମୋଟା ଖଦଡ ଧୋତି । ସନ୍ଦେହ ହେଲା କିଏ ଲିଏ ଅମ

ପରେଶ ଜେନା ହେବ ? ସେ ଯେ ପୋଷାକ ପାଇଁ ସମସ୍ତ କଲେଜର ଦୃଷ୍ଟି ଆକର୍ଷଣ କରିଥିଲା । ଆଜକୁ ପ୍ରାୟ ୮ ବର୍ଷ କାଳ ସେ ନିରୁଦ୍ଦେଶ । ହଁ, ନିରୁଦ୍ଦେଶ କହିଲେ ଚଳେ । କାରଣ ୪।୬ ମାସ ପରେ ଥରେ ଦେଓ୍ୱାନ ପାଖକୁ ଚିଠି ଲେଖିଲା ଟଙ୍କା ପଠାଅ । ଆଜି ଏଠି, କାଲି ସେଠି । କେଉଁଠି ଯେ ଥାଏ ତାର ପତ୍ତା ନାହିଁ, ମୋର ଚିନ୍ତାଧାରା ଛିନ୍ନ ଭିନ୍ନ କରି ସେ କହି ଉଠିଲା—"ଆରେ ନଳିନୀ ଯେ । Good morning, Good morning କେବେ ଆସିଛୁ ?"

"Good Morning, ଆଜି ସକାଳେ ଭାଇ ।"

"ଅଛୁ କେଉଁଠି ?"

"ଫ୍ରେଣ୍ଡ୍ସ ବୋର୍ଡିଂରେ ।"

"ଦୁଇ ଚାରି ଦିନ ଅଛୁ ତ ?"

"ରାମଚନ୍ଦ୍ର, ଆଜି ସଞ୍ଜ ଗାଡିରେ ଚମ୍ପଟ ଦେବି । ମୋତେ ତ ଖୁଣି ମୋକଦ୍ଦମାର ସାକ୍ଷୀ ପରି ଅନେକ ଜେରା କଲୁ । ମୁଁ ଯେ ତୋତେ ଦୁଇ ଚାରିଟା କଥା ପଚାରିବାକୁ ଆକୁଳ ହୋଇ ଉଠିଲିଣି ।"

"ଅସଙ୍କୋଚରେ ପଚାରି ପାରୁ— ।"

"ଏତେ ଦିନ ଥିଲୁ କାହିଁ ? ଶୁଣିଛି ୪।୬ ମାସରେ ଥରେ ଘରକୁ ଚିଠି ଲେଖୁ ଟଙ୍କା ପାଇଁ । ଟଙ୍କା ପଇସା ମଧ୍ୟ ବିଶେଷ କିଛି ଅଣାଉ ନା । କରୁ କଣ ? ତୋ ବେଶଭୂଷା ଦେଖି ମୁଁ ତ ଚିହ୍ନି ପାରୁ ନ ଥିଲି, ଆଉ ଚିହ୍ନିବ କିଏ ? ଆରେ ତୋର ହେଲା କ'ଣ ?"

"ମୋ କଥା ଶୁଣିବୁ ତ, ସେଇଥି ପାଇଁ ଭାବନା କ'ଣ ? ଢେର ସମୟ ଅଛି । ଚାଲ, ଖାଇପିଇ ଏଲାହାବାଦଟା ବୁଲି ଏଠିକାର ଦେଖିବା ଜିନିଷ ଯାହା କିଛି ଅଛି ଥରେ ଦେଖି ଦେ । ତୋର ତ ଘର ଛାଡ଼ି ଆସିବା ସୁଯୋଗ ହୁଏ ନାହିଁ । ହଠାତ୍ ବାହାରି ପଡ଼ିଛୁ, ଥରେ ବୁଲି ଚାଲି ଦେଖିଦେ ସବୁ । ମୁଁ ଚାରିଟା ବେଳେ'

ଖସ୍ରୁ ବାଗରେ ଯାଇ ପହଞ୍ଚିବ । ବଡ ବ୍ୟସ୍ତ ଅଛୁ ଭାଇ । କିଛି ମନେ କରିବୁ ନାହିଁ । ଏହି ଚିଠି ଖଣ୍ଡିକ ବୋର୍ଡିଂରେ ଦେଲେ ତୋତେ ଦେଖାଇବା ପାଇଁ ସଙ୍ଗରେ ଲୋକ ଦେବେ । ମେନେଜର ମୋର ବିଶେଷ ପରିଚିତ ବୁଝିଲୁ ? କୌଣସି ଅସୁବିଧା ହେବ ନାହିଁ । ଭାରତ ସମ୍ରାଟ୍ ସେଲିମଙ୍କର ବଡ ପୁଅ ଖସରୁର ଶେଷ ଶଯ୍ୟା ବିଛା ରହିଛି ସେଠି । ପାଖରେ ତାଙ୍କର ମା, ଇତିହାସ ପ୍ରସିଦ୍ଧ ବୀର ମାନସିଂହଙ୍କ ଭଗିନୀ ଯୋଧାବାଈ ଚିର ସୁପ୍ତା । ସେଠାରେ ତୋତେ ମୋ କଥା ସବୁ କହିବ । ଏତେଦିନ କାହାରିକୁ କହିବାର ସୁଯୋଗ ପାଇ ନାହିଁ । କହିବ ବା କାହାକୁ, ଶୁଣିବ ବା କିଏ ? କିଏ ବୁଝିବ ଏ ଛାତିରେ କି ତୀବ୍ର ବିଷର ନିଆଁ ଅହରହ ରାବଣର ଚିତା ପରି ଧୁ ଧୁ ଜଳୁଛି ? ଦେଶରେ ଏ କେତେ ଦିନ ମଧ୍ୟରେ କେତେ ଅଖ୍ୟାତି ଉଠିଥିବ; କେତେ କାଳ୍ପନିକ ଗଳ୍ପରେ ଦେଶ ପୂର୍ଣ୍ଣହୋଇ ଯାଇଥିବ । But I do not care a straw for them. ଅବୁଝା କିନା, ଅବୁଝା ଯଦି ନ ବୁଝେ, ଦୁଃଖ କ'ଣ ଭାଇ ? ବରଂ ଦୁଃଖ ହୁଏ—ଅବୁଝା ଗୁଡ଼ାକ ଚିରକାଳ ଅବୁଝା ରହିଗଲେ, କେବଳ ନିଜର ଅନ୍ଧ କାଦୁଅରେ ପଡ଼ି । ଦୁଃଖ ମୋର ସେମାନଙ୍କ ପାଇଁ, ନିରୀହ ବିଚାରୀ ପଶୁଦଳ । ବିରାଗର ନୁହେଁ—ଦୟାର ପାତ୍ର ସେମାନେ ।"

## ( ଦୁଇ )

ଖସ୍ରୁବାଗକୁ ଯାଇ ଦେଖେତ ଯୋଧାବାଈଙ୍କର କବର ଉପରେ ଫୁଲର ହାର ବିଛାଇ ପରେଶ ବନ୍ଦନା କରୁଛି । ମୋତେ ଦେଖି କହିଲା, "ଏହି କବର ଦେଖୁଛୁ, ହିନ୍ଦୁ ମୁସଲମାନଙ୍କର କେତେ ଅତୀତ ଗାଥା ଗାଇ ଚାଲିଛି ଯୁଗ ଯୁଗ; ଅଥଚ ଏଠାରେ

ଖଣ୍ଡିଏ ଅଳ୍ପ ଅଜଡ଼ଳ, ଜଣେ ସାମାନ୍ୟ ଦରୱାନର ଦୟା ଉପରେ ନିର୍ଭର କରେ। ଏପରି ଦିନ ଥିଲା ଯେଉଁ ଦିନ ଏହାଙ୍କର ଇଙ୍ଗିତରେ ଲକ୍ଷ କୋଟି ସ୍ୱର୍ଣ୍ଣମୁଦ୍ରା ବ୍ୟୟିତ ହେଉଥିଲା; ଆଉ ଆଜି—"

ଚୁଲି ଚୁଲି ବଡ଼ କ୍ଲାନ୍ତ ହୋଇ ପଡ଼ିଥିଲି। ପରେଶକୁ କହିଲି, "ଚାଲ ଭାଇ ଖୋଲାରେ ଟିକିଏ ବସିବା। ତୋର ସବୁ କଥା ନ ଶୁଣି ମୁଁ ଆଉ ପାଦେ ଘୁଞ୍ଚିବି ନାହିଁ।" 'ଚାଲ' କହି ପରେଶ ବାହାରି ପଡ଼ିଲା। ଦୁହେଁ ଯାଇଁ ବସିଲୁ କଅଁଳ ଘାସର ଶ୍ୟାମଳ ଗାଲିଚା ଉପରେ। ପାଖରେ ବିଭିନ୍ନ ଦେଶର, ବିଭିନ୍ନ ଗନ୍ଧର କେତେ ଯେ ଫୁଲ ଫୁଟିଥିଲା ତାର କଳନା ନାହିଁ। କୋଇଲିଟାଏ କେଉଁଆଡ଼ୁ ଆସି ଡାକ ଉଠିଲା—କୁହୁ କୁହୁ, କୁହୁ କୁହୁ, କୁହୁ କୁହୁ ...

ପରେଶ ତା କଥା ଆରମ୍ଭ କଲା—"ଘର ତ ଜାଣୁ, ଲତା-ଦେଈପୁର। ବାପା ଓ ମୋ ଛଡ଼ା ସଂସାରରେ ଆଉ କେହି ନ ଥିଲେ। ଦାଦେଇଙ୍କ ସଙ୍ଗରେ ତ ବାପାଙ୍କର ପିଲାଦିନରୁ ବନେ ନାହିଁ। ମାଲି ମୋକଦ୍ଦମା ପ୍ରାୟ ଲାଗି ରହିଛି। ବି. ଏ. ପରୀକ୍ଷା ଦେଇ ଘରକୁ ଆସିଲି। ଶୁଣିଲି, ଗ୍ରାମ ପ୍ରାନ୍ତର ଶିବ ମନ୍ଦିରରେ ଏକ ବ୍ରହ୍ମଚାରୀର ଆବିର୍ଭାବ ହୋଇଛି। ତାଙ୍କ ସୁନାମରେ ଆମ ସେ ଅଞ୍ଚଳଟି ପୂରି ଯାଉଛି। ବଡ଼ ଅମାୟିକ, ବଡ଼ ଦୟାଳୁ ଓ ଉଚ୍ଚ ଶିକ୍ଷିତ ସେ।

ଦିନେ ସକାଳୁ ଉଠି ମନ୍ଦିର ଆଡ଼କୁ ଗଲି, ଉଦ୍ଦେଶ୍ୟ, ବ୍ରହ୍ମଚାରୀଙ୍କ ସଙ୍ଗେ ଆଳାପ କରିବା। ମନ୍ଦିର ପାଖକୁ ଯାଇ ଦେଖିଲି, ଏକ ଅପୂର୍ବ ସୁନ୍ଦରୀ ଫୁଲଡ଼ାଲା ଧରି ଫୁଲ ତୋଳୁଛି—ରୂପ ତାର ଫାଟି ପଡ଼ୁଛି। ଏ କ'ଣ କଣ୍ୱ ମୁନିଙ୍କ ଆଶ୍ରମର ଶକୁନ୍ତଳାଙ୍କ ଆବିର୍ଭାବ, ମୁଗ୍ଧ ହେଲି।

ପ୍ରତିଦିନ ଯିବା ଆସିବା କରେ । ସନ୍ଧ୍ୟାବେଳେ ବ୍ରହ୍ମଚାରୀ ଭାର୍ଗବ ନାୟକଙ୍କ ସଙ୍ଗରେ ଦର୍ଶନର ଆଲୋଚନା ହୁଏ । କ୍ରମେ ସେ ମୋତେ ବଡ଼ ଭଲ ପାଇବାକୁ ଲାଗିଲେ, କିଛିଦିନ ପରେ ସ୍ମୃତିକୁ ମୁଁ ଦିନେ ବିବାହର ପ୍ରସ୍ତାବ କଲି । ବ୍ରହ୍ମଚାରୀ ଗମ୍ଭୀର ହୋଇ ଉଠିଲେ । ତାଙ୍କର ବୁଝିବାକୁ ବାକି ନ ଥିଲା ଯେ, ସ୍ମୃତି ଚାହେଁ ମୋତେ ଓ ମୁଁ ଚାହେଁ କେବଳ ତାହାକୁହିଁ ମୋର ଏକାନ୍ତ କରି ରଖିବା ପାଇଁ । ସ୍ମୃତିର ବାପୁ ଭାର୍ଗବ ନାୟକ ମୋତେ ଦିନେ ନିର୍ଜନକୁ ଡାକି କହିଲେ, "ପରେଶ, କନ୍ୟା ମୋର ବାଲ ବିଧବା । ସାତ ବର୍ଷ ବୟସରେ ତାର ବିବାହ ଦେଲି । ଦୁର୍ଭାଗ୍ୟ ଯେ, ପନ୍ଦର ଦିନ ମଧ୍ୟରେ ସେ ବିଧବା ହେଲା । ଗାଁରେ କଲେରା ବସନ୍ତ ମାଡ଼ିଗଲା । ବଂଶଯାକ ନିପାତ ହେଲେ । ଦୁର୍ଭାଗ୍ୟ ଭୋଗିବାକୁ ରହିଲି ମୁଁ ଓ ମୋର ସ୍ନେହର ଝିଅଟି ଏହି ସ୍ମୃତି । ତାର ଶିକ୍ଷା ଦୀକ୍ଷାର ଭାର ମୋ ଉପରେ ଆସି ପଡ଼ିଲା । ଗାଁରେ ରହିବାକୁ ମନ ହେଲା ନାହିଁ । ତାକୁ ନେଇ ଦେଶ ଦେଶାନ୍ତର ବୁଲି ବୁଲି ଶେଷ ଏହି ଗାଁରେ ଆଶ୍ରୟ ନେଲି । ଏହି ଶ୍ମଶାନଟି ମୋର ବୈରାଗ୍ୟ ପଥର ଗୁରୁ । ନିତି ଦେଖେ, କେତେ ଆସେ, କେତେ ଯାଏ । ଥାଉ ସେ କଥା । କନ୍ୟା ମୋର ମାୟାମୟୀ । ମାୟା ତାର ଛାଡ଼ି ନ ପାରି ଆଜି ଯାଏ ଏ ବୋଝ ବୋହି ବୁଲୁଛି ।"

କହିଲି, "ବ୍ରହ୍ମଚାରୀ; ମନୁଷ୍ୟ ଜୀବନ ଗୋଟାଏ ଖେଳର ସାମଗ୍ରୀ ନୁହେଁ, ଏହାର ନିୟନ୍ତା କେଉଁ ଅଲକ୍ଷ୍ୟରେ ବସି ପ୍ରତ୍ୟେକର ଜୀବନ ପଥ ନିର୍ଦ୍ଦେଶ କରୁଅଛନ୍ତି । ଗୋଟାଏ ଜୀବନ କେବେ ବ୍ୟର୍ଥ ହୁଏନା । ବିଫଳ ହୁଏନା । ବିପତ୍ନୀକ ପୁରୁଷ ଅତି ସହଜରେ ବିବାହ କରିବ । ଥରେ ନୁହେଁ, ଦୁଇଥର, ଚାରିଥର, ଛଅଥର, ଯେତେ ଇଚ୍ଛା ତାର । ଆଉ ନାରୀ ଅସହାୟା ହୋଇ ଆମରଣ ଜୀବନ

ଧିପାଡ଼ିବ କାହିଁକି ? ପୁରୁଷ ଶାସ୍ତ୍ରକାର ହୋଇ କି ଏ ପକ୍ଷପାତତା ? ଏହି ପାପରେ ବୁଡ଼ିବ ଆମ ସମାଜ । ପଙ୍କୁ ସେ ଅତଳ ତଳରେ ଅଚିରେ ଲୀନ ହେବ । ମୋର ଏକମାତ୍ର ଭିକ୍ଷା ସ୍ମୃତିକୁ ମୋତେ ଦିଅନ୍ତୁ, ମୋର ଜୀବନର ଧ୍ରୁବ ତାରା ରୂପେ ମୋର ଲକ୍ଷ୍ୟ ପଥରେ ସ୍ଥିର ହୋଇ ଚିର ଜାଗ୍ରତ ରହିବା ପାଇଁ ।”

–“ବୁଝିଲି ପରେଶ, ସବୁ ବୁଝିଲି । କିନ୍ତୁ କନ୍ୟା ମୋର ବାଳ-ବିଧବା । ପୁନର୍ବିବାହରେ ସେ ପୂର୍ଣ୍ଣ ଅଧିକାରିଣୀ; କିନ୍ତୁ ତୁମ ପିତା—?”

“ସେ ମୋର ଇଚ୍ଛାରେ କେବେ ବାଧା ଦେଇ ନାହାନ୍ତି, ଦେବେ ମଧ୍ୟ ନାହିଁ । ଅତି ପିତା ମୋର ହୃଦୟହୀନ ନୁହନ୍ତି । ସେ ହିନ୍ଦୁ ବିଧବାର ବେଦନା ପ୍ରାଣଦେଇ ଅନୁଭବ କରନ୍ତି । ତେବେ ମୋର ପ୍ରାର୍ଥନା ଯେ, ଆପଣ ଏକଥା ବର୍ତ୍ତମାନ ଏଠାରେ ପ୍ରକାଶ କରିବେ ନାହିଁ ।”

ଅନେକ ଅନୁରୋଧ ଉପରୋଧରେ ପଡ଼ି ଶେଷରେ ଭାର୍ଗବ ନାୟକ ସମ୍ମତ ହେଲେ । ଅଚିରେ ବିବାହ ହୋଇଗଲା । ମୋର ଆକାଂକ୍ଷିତାକୁ ଏକାନ୍ତ ଭାବେ ମୋର କରିବାର ସୁଯୋଗ ପାଇ ଧନ୍ୟ ହେଲି । ତା ଦେଖି ଭାଗ୍ୟ ବିଧାତା ଅଲକ୍ଷ୍ୟରେ ବସି ହସି ଉଠିଲା । ବିବାହ ବର୍ଷ ପୂର୍ଣ୍ଣ ହେବାକୁ ୧୦-୧୫ ଦିନ ମାତ୍ର ବାକି । ପିତା ମୋର ଅତି ଆନନ୍ଦରେ ବିବାହ ବର୍ଷ ପୂର୍ଣ୍ଣ ହେବା ଦିନଟିକି ଅପେକ୍ଷା କରି ରହିଛନ୍ତି । ଆଶା, ଖୁବ୍ ସମାରୋହରେ ଉତ୍ସବ କରିବେ । ଭାଗ୍ୟରେ ଭାଇ, ଭାଗ୍ୟ, ୫ । ୭ ଦିନ ପରେ ବାବା ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ଜାଣୁ ତ ତାଙ୍କର Heart disease ଥିଲା । ରୋଗଟା ଏତେ ବଢ଼ି ଉଠିଲା, ଯେ ମୋର ଘରଗାଡ଼ି ପଦାକୁ ବାହାରିବା ଅସମ୍ଭବ ହୋଇ ପଡ଼ିଲା । ତାଙ୍କ ପାଦ ତଳେ ବସି ରହିଲି—ମୁଁ,

ସ୍ମୃତି ଦୁହେଁ, ଧନ ସ୍ମୃତି—ରାତି ଦିନ । ବଡ଼ ବଡ଼ ଡାକ୍ତର, କବିରାଜ ଆସି ଜୁଟିଲେ, ଅଜସ୍ର ଟଙ୍କା ଖରଚ ହେଲା; କିନ୍ତୁ ପ୍ରାଣପାତ ପରିଶ୍ରମ ସବୁ ବ୍ୟର୍ଥ କରି ସେ ଅଜଣା ପଥର ଯାତ୍ରୀ ହେଲେ ।

ସ୍ମୃତି କାନ୍ଦିବାକୁ ବସିଲି । ମୁଁ କଠୋର ସଂସାର ମଥାରେ ଦେଇ ବାହାରେ ଆସି ଛିଡ଼ା ହୋଇ ଚାହିଁ ଦେଖେ ତ ଉପରେ ମୋର ମହାଶୂନ୍ୟ ନୀଳାକାଶ୍ ମାତ୍ର ।

ଶ୍ରାଦ୍ଧର ଦିନାକେତେ ପୂର୍ବରୁ ଗୋଳ ଉଠିଲା, ମୋର ବଡ଼ବାପା, ପିତାଙ୍କର ଜ୍ୟେଷ୍ଠ ସହୋଦର କପୋତପଦାରୁ ଫେରି ରାଷ୍ଟ୍ର କଲେ, ମୁଁ ବାଲ-ବିଧବା ବିବାହ କରିଛି, ମହା ଅପରାଧୀ ମୁଁ ହେଲି । ମୋ ଘରେ ଖାଇବା ପଛକୁ ଥାଉ, ମୋର ଦିଆ ଟଙ୍କା ପଇସାରେ ମଧ୍ୟ ଜିନିଷ କିଣିଲେ, ତାହା ଅପବିତ୍ର ହେବ ବୋଲି ଜାତିପତି ବ୍ରାହ୍ମଣ ଦଳ ତ ବ୍ରାହ୍ମଣ ଦଳ, ମୋର ଅତି ନିକଟ ଆତ୍ମୀୟମାନେ ମଧ୍ୟ ଖାଇବାକୁ ସ୍ୱୀକୃତ ହେଲେ ନାହିଁ । ବଡ଼ ବିପଦରେ ପଡ଼ିଲି, କରିବି କଣ ? ଏହି ସମୟରେ ମୌଖିକ ଦୁଇଟା ସାନ୍ତ୍ୱନା ଦେବାକୁ ମଧ୍ୟ କେହି ନ ଥିଲେ ମୋର । ତମମାନଙ୍କ ପାଖକୁ ତାର କରିବି ଭାବୁଛି, ହଠାତ୍ ବଡ଼ ଶଶୁର ଆସି ଉପସ୍ଥିତ ହେଲେ, ତାଙ୍କୁ ଦେଖି ଅକୂଳରେ କୂଳ ପାଇଲି । ସେ ଯେ ଏତେଦିନ କାହିଁ ଥିଲେ ଭଗବାନ ଜାଣନ୍ତି, ବିବାହ ରାତିରୁ ମେଲାଣି ନେଇ ଅନିର୍ଦ୍ଦିଷ୍ଟ ପଥରେ ଚାଲି ଯାଇଥିଲେ । ଏହି ଏଗାର ମାସ କାଳ ଖଣ୍ଡିଏ ଚିଠି ମଧ୍ୟ ଦେଇ ନାହାନ୍ତି । ସେ ମୋ ପାଖକୁ ଆସି ସସ୍ନେହରେ ମୋ ମଥାରେ ହାତ ବୁଲାଇ କହିଲେ, "ପରେଶ, ବାପ, ମୁଁ ତୁମକୁ ଜାଣେ, ଚିହ୍ନେ । ମୁଁ ପରୋକ୍ଷରେ ମଧ୍ୟ କେବେ ତୁମକୁ ଭୁଲି ବୁଝିବି ନାହିଁ । ମୁଁ ସବୁ ଶୁଣିଛି; ଶୁଣି ଧାଇଁ ଆସିଛି । କେବଳ ସ୍ମୃତି ପାଇଁ ତମ ପିତୃ କ୍ରିୟା ପଣ୍ଡ ହେବାକୁ ବସିଛି । ମୁଁ ତାକୁ— "

ଆବେଗରେ କହି ପକାଇଲି, ନେଇ ଯାନ୍ତୁ ମାତ୍ର ୪ଟି ଦିନ ପାଇଁ । ତା ପରେ ମୁଁ ମୁକ୍ତ । ସେତେବେଳେ ଏହି କୁଳଗର୍ବୀ ଭଣ୍ଡ ଦଳର ହାତରେ ନିର୍ଯ୍ୟାତିତ ହେବାର ମୋର ଆଦୌ ଅବକାଶ ନ ଥିବ । ମୁଁ ମୋର ପ୍ରଭୁ, ମୁଁ ମୋର ନିୟନ୍ତା; ମୋର ବିଚାର ହେବ, ଶ୍ରେଷ୍ଠ—ସର୍ବଶ୍ରେଷ୍ଠ ବିଚାରକ ଠାରେ ।

ସ୍ମୃତିର ଯିବା ସ୍ଥିର ହେଲା । ଗର୍ଭବତୀ ସେ ନିର୍ଜନରେ ଯାଇ ପଚାରିଲା, କାହିଁ ଯିବି ମୁଁ ? ଉତ୍ତର ଦେବି କଣ ମୁଣ୍ଡ ବୁଲାଉଛି, ଛାତିଟା କମିତି ଫାଙ୍କା ଫାଙ୍କା । କୁଳ ପୁରୋହିତ ଆସି କହିଲେ—ଚଣ୍ଡୀ ମଣ୍ଡପରେ ଡକରା ପଡ଼ିଛି, ପଞ୍ଚାଏତ ସେଠାରେ ଜମା ହୋଇ ରହିଛନ୍ତି ।

ଭିତରକୁ ଯାଇ କହିଲି, "ସ୍ମୃତି, ମୁଁ ଅକ୍ଷମ, ଅପାରଗ ହୃଦୟହୀନ ପଶୁ, ମତେ କ୍ଷମାକର । ମାତ୍ର—"

ମୋତେ କହିବାକୁ ଅବସର ନ ଦେଇ ସେ କହିଲା, "ମୁଁ କଣ ଜାଣେ ନାହିଁ—କେତେ ଭଲପାଅ ମତେ; କିନ୍ତୁ ପିତୃ ଚିନ୍ତା ଯୋଗୁଁ ମୁଁ ଯାଉଛି, ମୁଁ ଯେଉଠି ଥାଏ ତମର ସୁଖ ସ୍ମୃତି ହେବ ମୋର ଜୀବନର ଶେଷ ପାଥେୟ ।

ସ୍ମୃତି ଚାଲିଗଲା ତାର ବନ୍ଧୁ ସଙ୍ଗରେ । ତିନି ଦିନ ପୂର୍ବେ ଦେଖିଥିବା 'ସୀତା' ନାଟକଟିର ଛବି ମୋର ଆଖି ଆଗରେ ଭାସି ଉଠିଲା—ପୂର୍ଣ୍ଣଗର୍ଭା ନାରୀ—ସମ୍ପୂର୍ଣ୍ଣ ଅସହାୟା ପରିତ୍ୟକ୍ତା । ରାମଚନ୍ଦ୍ରଙ୍କ ମର୍ମଦାହ ଶତ ଗୁଣରେ ଆସି ବୁକୁରେ ଆଘାତ କଲା । ପ୍ରତିମା ବିସର୍ଜନ ଦେଇ ପ୍ରାଣହୀନ ମୁଁ ନିତ୍ୟ କର୍ମରେ ଯୋଗ ଦେଲି, ଦୁନିଆର ଆଲୁଅ ନିଭି ଯାଇଥିଲା, ଅନ୍ଧକାର ପୃଥ୍ୱୀରେ ପ୍ରେତ ପରି ବୁଲିଲି—ପ୍ରେତ ପରି, ଠିକ ପ୍ରେତ ପରି ।

ସ୍ମୃତି ଠାରୁ ମୋର ତ ଜଣାଥିଲା—ବଡ଼ଙ୍କ ପୁଞ୍ଜିପତ୍ର ପ୍ରାୟ ନିଃଶେଷ । ଅର୍ଥଦେଇ ସେମାନଙ୍କୁ ଅପମାନ କରିବାର ମଧ୍ୟ ମୋର ଆଦୌ ସାହସ ନ ଥିଲା ଭାଇ !

ଶ୍ରାଦ୍ଧ ଶାନ୍ତି ଶେଷ ହେଲା ! ମୋତେ ବାନ୍ଧି ରଖିବା ପାଇଁ ଘରେ କେହି ନାହିଁ, କିଛି ନାହିଁ । ସ୍ମୃତିର ସନ୍ଧାନରେ ବାହାରି ପଡିଲି । ମୁଁ ଅବତମାନର ଶ୍ରୀରାମଚନ୍ଦ୍ର ନୁହେଁ । କ୍ଷୁଦ୍ର ନର ମୁହିଁ—ଅଳ୍ପ ନେଇ ମୋର ସଂସାର । ସେଥିରୁ ତିଳେ ଅଧେ କମି ଗଲେ, ମୋର ଯଥେଷ୍ଟ କ୍ଷତି ହୁଏ । ପ୍ରାଣ ମୋର ନିତି ଧିକ୍‌କାର ଦେଲା—"ତୁ ଏଠି ରାଜା ସୁଖରେ ବସିଅଛୁ, ଆଉ ସେ କାହିଁ କେଉଁଠି, କି ଅବସ୍ଥାରେ ? ତୋହର ପାଇଁ ନା ସେ ଆଜି ପଥକୁ ବରଣ କଲା ? ଅନାହାରରେ, ପରିଶ୍ରମରେ କେତେବେଳେ କେଉଁଠି ମଉଳିଯିବ ଯେ ସେ, ଭାବି ଦେଖିଛୁ ?"

ଭାଇ, ଘର ଛାଡ଼ି ବାହାରି ପଡ଼ିଲି । ପାଗଳ ପରି ୮ ବର୍ଷ କାଳ ଦିନ ନାହିଁ, ରାତି ନାହିଁ, ସ୍ଥାନ ନାହିଁ, ଅସ୍ଥାନ ନାହିଁ—ବୁଲିଲି ; କିନ୍ତୁ କାହିଁ ମୋର ସେ ? ହୁଏତ ଏ ଜୀବନରେ ଆଉ ଦେଖା ମିଳିବ ନାହିଁ । ପଥରେ ମୋର ଯାତ୍ରା ଆରମ୍ଭ ; ପରିସମାପ୍ତି ମଧ୍ୟ ସେହି ପଥରେ । ଆଜିକୁ ପାଞ୍ଚଦିନ ହେଲା ଏଠାକୁ ଆସିବାରେ, ସ୍ଥାନ ଅସ୍ଥାନ ସବୁ ଖୋଜିଲି ଭାଇ ! କିନ୍ତୁ କାହିଁ ମୋ ପ୍ରାର୍ଥିତା ଜୀବନ ସୀତା ? "

ପରେଶର ଆଖିରୁ ଦୁ' ଟୋପା ଲୁହ ଗଡ଼ି ପଡ଼ିଲା । କହିଲି, "ପରେଶ, ଏତେ କାତର ହେଲେ ଚଳିବ ଭାଇ ? ତୁ ଧୀର ସ୍ଥିର ହୋଇ ରହ । ଦେଖିବୁ ସେ ଆପେ ଆପେ ଆସି ଦେଖା ଦେବେ ! ପ୍ରେମର ଏତେ ବଡ଼ ନିସ୍ବାର୍ଥପର ସାଧନା କେବେ ବ୍ୟର୍ଥ ହୋଇ ପାରେ ନା ଯେ ।"

( ତନ )

"ବାବୁ ମୋତେ କିଛି ମିଳୁ ।"

ପରେଶ ଓ ମୁଁ ଉଭୟେ ଚମକି ଉଠିଲୁ, ସୁଦୂର ଦେଶରେ ନିଜର ଭାଷା ଶୁଣି । ପରେଶ ପିଲାଟିକୁ ଦେଖି ପାଗଳ ହୋଇ ଉଠିଲା । ଧାଇଁ ଯାଇଁ ପିଲାଟିକୁ କୋଳରେ ନେଇ ଚୁମା ଦେଇ ପଚାରିଲା "ବାପା, କଣ କହୁଛୁ ?"

"ମା ମୋର ଚାଲି ପାରୁ ନାହିଁ, ଦେହ ଖରାପ ତାର । ମୁଁ ମଧ୍ୟ କାଲି ଠାରୁ କିଛି ଖାଇ ନାହିଁ । ମୋତେ କିଛି ଦୟା କରନ୍ତୁ ।"

"ତମର କିଏ ଅଛି ?"

"ମା"

"ଆଉ ?"

"କେହି ନାହିଁ—ଆମର କିଛି ନାହିଁ ।"

"ତୁମ ଘର ?"

"ଜାଣେ ନାହିଁ"

"ଥାଅ କେଉଁଠି ?"

"କେଉଁ ଦିନ ଗଛ ମୂଳରେ, କେଉଁ ଦିନ ପଥରେ, କେଉଁ ଦିନ ନଈ କୂଳରେ ।"

"ତୁମ ବାପା ?"

"ତାଙ୍କ କଥା ମା ଜାଣନ୍ତି ।"

"ତୁମ ମା କାହିଁ ?"

"ଷ୍ଟେସନ ପାଖ ଗଛ ତଳେ । ମତେ କିଛି ମିଳୁ ।"

"ମିଳିବ, ମିଳିବ; ତୁମେ ଯା ଖୋଜିବ ସବୁ ମିଳିବ । ଚାଲ ତୁମ ମା କତିକି ଯିବା" କହି ପରେଶ ପିଲାଟିକୁ କୋଳରେ ନେଲା ।

ଭାବିଲି ଭାବି ଭାବି ଏଠା ପାଗଳ ହେଲା ।

... ...

ଜୀର୍ଣ୍ଣ ଶୀର୍ଣ୍ଣ କନ୍ଥା ଖଣ୍ଡିଏ ଘୋଡ଼ାଇ ହୋଇପଡ଼ି ରହିଛନ୍ତି ଏକ ରୁଗ୍‌ଣା ଅସହାୟା ନାରୀ । ଶୀର୍ଣ୍ଣ ହାତ ପାପୁଲିଟିଏ ବାହାରରେ ଦେଖା ଯାଉଥିଲା—ଠିକ୍ ଯେପରି ଚମ୍ପାକଢ଼ି ଗୁଡ଼ାକ କିଏ ସଜାଇ ରଖିଛି ।

ପିଲାଟି ପାଖକୁ ଯାଇ ଡାକିଲା—"ମା" ।

ରୁଗ୍‌ଣା ପଚାରିଲା "କଣ ବାପ ?"

"ବାବୁମାନେ ତତେ ଦେଖିବାକୁ ଆସିଛନ୍ତି ପରା, ଉଠ ।"

"ବାବୁ" !

ମୁହଁ ଢ଼ାଙ୍କୁଣି ଖୋଲି ଗଲା, ପରେଶ ଉନ୍ମତ୍ତ ପରି ଧାଇଁ ଯାଇ ଡାକିଲା—"ସ୍ମୃତି, ସ୍ମୃତି, ସ୍ମୃତି ମୋର ।"

ସ୍ମୃତି କଣ କହିବାକୁ ଯାଇ କହି ପାରିଲା ନାହିଁ, ଆଖିରେ ତାର ଅଜସ୍ର ଲୁହ ଧାର । ପରେଶ ସ୍ମୃତିର ମଥା ନିଜ କୋଳରେ ରଖି ବସିଲା । ବ୍ୟାପାର ବୁଝିବାକୁ ମୋର ଆଉ ଡେରି ହେଲା ନାହିଁ । ଗାଡ଼ି ଅଣାଇ ସମସ୍ତଙ୍କୁ ନେଇ ଗଲି ପରେଶର ବସାକୁ । ଚିଫ୍ ମେଡ଼ିକେଲ ଅଫିସରଙ୍କୁ ଖବର ଦେଲି ।

ମନେ ମନେ ଭାବିଲି—ତ୍ରିବେଣୀ ସଙ୍ଗମ ସ୍ନାନ ଫଳ ସଦ୍ୟ ସଦ୍ୟ ହାତରେ ମିଳିଲା, ଏହି ତରୁଣ ତରୁଣୀର ଶୁଭ ମିଳନରେ ।



[ 'ସହକାର' ପଞ୍ଚଦଶ ଭାଗ, ଦ୍ୱାଦଶ ସଂଖ୍ୟା, ଚୈତ୍ର ୧୩୪୨, ମାର୍ଚ୍ଚ ୧୯୩୬ ]

ଭଗବତୀ ପାଣିଗ୍ରାହୀ

# ଶିକାର

ସେ ଅଞ୍ଚଳରେ ଘିନୁଆର ନାମ ବିଖ୍ୟାତ—ଶିକାରୀ ହିସାବରେ । ତାର ପ୍ରଧାନ ଅସ୍ତ୍ର ନିଜର ହାତ ତିଆରି ଧନୁଶର । ସେ ତୀର୍ ମାରିଲା ବେଳେ ଚିତ୍ ହୋଇ ଶୋଇ ପଡ଼େ, ବାଁ’ ପାଦଟି ଧନୁରେ ଲଗାଇ ଦେଇ କାନ ପର୍ଯ୍ୟନ୍ତ ତୀରଟି ଟାଣି ନେଇ ଛାଡ଼ିଦିଏ । ମାଇଲ୍‌ଏ ଦୂରରୁ ତୀର ମାରି ସେ ଲକ୍ଷ ବିନ୍ଧି ପାରେ । ଏହି ଧନୁଶର ସାହାଯ୍ୟରେ ସେ ହରିଣ, ସମ୍ବର, ବାର୍ହା, ଭାଲୁ ମାରିଛି ଅଗଣିତ; ଚିତାବାଘ ବି’ ମାରିଛି ଅନେକ । କିନ୍ତୁ ମହାବଳ ମାରିଛି ମୋଟେ ଦୁଇଟି । ମହାବଳ ଦୁଇଟି ମାରି ସେ ଡେପୁଟି କମିଶନରଙ୍କ ଠାରୁ ବେଶ୍ ପୁରସ୍କାର ପାଇଛି ମଧ୍ୟ ।

ସେ ଦିନ ଭୋରରୁ ସେ ଏକ ଅଦ୍ଭୁତ ଶିକାର ନେଇ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର । ଗୋଟିଏ କାନ୍ଧରେ ତାର ଧନୁଟି ଝୁଲୁଛି, ହାତରେ ଦ' ତିନିଟା ତୀର, ଆଉ କାନ୍ଧରେ ଟାଙ୍ଗିଟି ପଡ଼ିଛି । ଘିନୁଆକୁ ଏ ବେଶରେ ଦେଖି ଅର୍ଦ୍ଦଳି ପଚାରିଲା—

"କିରେ, ଆଜି କି ଶିକାର ଆଣିଚୁ ?"

ଘିନୁଆ ସଙ୍ଗେ ତାର ଭଲ ଜଣାଶୁଣା । ତାର ବର୍କ୍‌ଶିସ୍‌ର ଅଂଶୀଦାର ସେ କେତେ ଥର ହୋଇଛି । ଉତ୍ତରରେ ଘିନୁଆ ତାର ମଇଳା ଦାନ୍ତ ଦୁଇ ଧାଡ଼ି କେବଳ ଦେଖାଇଲା । ସେ ହସିଲା କି ରେଁକିଲା ଜାଣିବାର ଉପାୟ ନାହିଁ । ପ୍ରକୃତରେ ହସ ବୋଲି ଯାହାକୁ କୁହାଯାଏ, ଘିନୁଆ ଠାରେ ତାହା କେହି କେବେ ଦେଖି ନାହିଁ । ବେଳେ ବେଳେ ସେ ଏହିପରି ଦାନ୍ତ ଦେଖାଏ । ତାହା ହସ ନୁହେଁ କି କାନ୍ଦ ନୁହେଁ—କେବଳ ଦାନ୍ତ ଦେଖା ।

ଅର୍ଦ୍ଦଳି ପଚାରିଲା, "କିରେ, କି ଶିକାର ଆଣିଚୁ ?"

ଘିନୁଆ ତାହାର ଗାମୁଛାରେ ବନ୍ଧା ହୋଇଥିବା ଗୋଟିଏ ପଦାର୍ଥକୁ ଦେଖାଇ କହିଲା ଯେ, ସେ ଆଜି ଏକ ମସ୍ତ ଜାନୁଆର ଶିକାର କରିଛି ।

ଅର୍ଦ୍ଦଳି ପଚାରିଲା, "ବାଘ ?"

ଘିନୁଆ ମୁଣ୍ଡ ହଲାଇ ନାହିଁ ଜଣାଇଲା ।

"ତେବେ କଣ, ଚିତା···ଭାଲୁ···ବାଘ···

ଘିନୁଆ କେବଳ ମୁଣ୍ଡ ହଲାଇ ଗଲା ।

"ଆଉ ତେବେ କଅଣ ବେ ?"

ଗୋଳମାଳ ଶୁଣି ସାହେବ ବଙ୍ଗଳା ଭିତରୁ ବାହାରି ଆସିଲେ । ଘିନୁଆ ମୁଣ୍ଡିଆ ମାରି ପୁଣି ସାହେବଙ୍କୁ ସେହିପରି ଦାନ୍ତ ଦେଖାଇଲା ।

ସାହେବ ଶିକାରର ଚେହେର୍ ଦେଖିବାକୁ ଔତ୍ସୁକ୍ୟ ପ୍ରକାଶ କରିବାରୁ ଧିନୁଆ ଗାମୁଛା ଭିତରୁ ବାହାର କରି ସାହେବଙ୍କ ପାଦ ତଳେ ଥୋଇଲା ଗୋଟିଏ ସଜକଟା ମଣିଷମୁଣ୍ଡ ।

ସାହେବ ଚମକି ପଡ଼ି ପାହୁଣ୍ଡେ ଦୁଇ ପାହୁଣ୍ଡ ପଛେଇ ଗଲେ । ଧିନୁଆ ହାତ ବଢ଼ାଇ ମାଗିଲା, "ସାହେବ, ବକ୍‌ଶିସ୍ ।" କିଛିକ୍ଷଣ ପରେ ମନକୁ ସମ୍ଭାଳି ନେଇ ସାହେବ ଧିନୁଆକୁ ବକ୍‌ଶିସ୍ ପାଇଁ ଅପେକ୍ଷା କରିବାକୁ ଇସାରା କଲେ ଓ ଭିତରକୁ ଯାଇ ଫୋନ୍‌ଦ୍ୱାରା ସଶସ୍ତ୍ର ପୋଲିସ ଫୌଜ ଡକାଇଲେ । ଏହା ବ୍ୟତୀତ ଧିନୁଆକୁ ଜବତ୍ କରିବାର ଉପାୟ ନାହିଁ । ଦେହରେ ତାର ଗୋଟାଏ ଅସୁରର ବଳ । ହାତରେ ପୁଣି ତା'ର ଧନୁଶର ଓ ଟାଙ୍ଗିଆ ରହିଛି ।

ଯେତେବେଳେ ହାତକଡ଼ି ଗୋଡ଼କଡ଼ି ପିନ୍ଧି ଧିନୁଆକୁ ହାଜତରେ ରହିବାକୁ ହେଲା, ସେ କିଛି ବୁଝି ପାରିଲା ନାହିଁ । ତାକୁ ଏପରି ଭାବରେ ଅଟକାଇ ରଖିବାର ମତଲବ କଅଣ ? ସୁବିଧା ପାଇଲେ ସେ କାହାରି କାହାରିକି ଏ ବିଷୟରେ ପଚାରେ । କିଏ କହେ ତାର ଫାସି ହେବ, କିଏ କହେ ସେ ଯିବ କଳାପାଣି, କାହିଁକି ? ସେ ଏମିତି କି ଅପରାଧ କରିଛି କି ? କିଛି ବୁଝି ନ ପାରି ସେମାନଙ୍କ କଥାକୁ ସେ ବିଶ୍ୱାସ କରି ପାରେ ନାହିଁ । ଶେଷରେ ଦିନେ ଡେପୁଟି କମିଶନର ପରିଦର୍ଶନ କରିବାକୁ ଆସିଥିଲେ । ସେ ତାଙ୍କୁହିଁ ସବୁ ହାଲ୍ ପଚାରିଲା । ସେ କହିଲେ ଯେ, ପୂର୍ବରୁ ସେ ବାଘ ଭାଲୁ ମାରୁଥିଲା ବୋଲି ସଙ୍ଗେ ସଙ୍ଗେ ବକ୍‌ଶିସ୍ ପାଉଥିଲା । ଏବେ ମାରିଛି ମଣିଷ । ଏଥର କି ବକ୍‌ଶିସ୍ ପାଇବ ତାହା ପାଇଁ, ଛ'ଜଣ ତ ଫେର ବୁଝି ବିଚାର ଠିକ୍ କରିବେ । ଏହି କଥାଟାହିଁ ଧିନୁଆ ମନକୁ ମାନିଲା ।

ଯେଉଁ ଦିନ ତାର ବିଚାର ହେଲା, ଧିନୁଆ, ମନେ ମନେ ଭାବିଲା ସେ ଦିନ ତାକୁ ବକ୍‌ଶିସ୍ ମିଳିବ । ସେ ଉତ୍ସାହିତ ହୋଇ

ଜଜ୍‌ଙ୍କ ଆଗରେ ସବୁ ବିବରଣୀ କହିବାକୁ ଲାଗିଲା "ସେ ଯେ ଗୋବିନ୍ଦ ସରଦାରକୁ ହାଣିଲା, ସେଥିପାଇଁ ତାକୁ କମ୍ କଷ୍ଟ କରିବାକୁ ପଡ଼ି ନାହିଁ । ଆଉ ଅନେକ ଲୋକ ତାକୁ ମାରିବାକୁ ଛକିଥିଲେ, କିନ୍ତୁ କେହି ପାରି ନ ଥିଲେ । ଗୋବିନ୍ଦ ସରଦାର ଯେ ସବୁବେଳେ ମଟରରେ ଯିବା ଆସିବା କରେ । ସେ ତାର ଧନ ସମ୍ପତ୍ତି କମେଇଛି ଅନ୍ୟ ସମସ୍ତଙ୍କୁ ଲୁଟି କରି; ବଡ଼ ସଇତାନ ଲୋକ ଥିଲା ସେ । କେତେ ଲୋକଙ୍କୁ ସେ ମାରିଛି, କେତେ ଲୋକଙ୍କୁ ଉଚ୍ଛନ୍ନ କରିଛି, କେତେ ସ୍ତ୍ରୀ ଲୋକଙ୍କର ଇଜ୍ଜତ ନେଇଛି, ତାହାର ଠିକଣା ନାହିଁ—ଧେନୁଆର ସବୁ ଜମିବାଡ଼ି ମଧ୍ୟ ନେଇ ନିଜର କରିଛି । ସେ ଦିନ ସନ୍ଧ୍ୟାରେ ଧେନୁଆର ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ବସିଥିଲା । ଏତେ ବଡ଼ ବାହସ । ଧେନୁଆକୁ ଦେଖି ମଟରରେ ପଳାଉଥିଲା । ତା ହାବୁଡ଼ରୁ ଖସି ଚାଲିଯିବ ! ତାର ମଟର ଚକକୁ ତୀର ମାରି ଧେନୁଆ ମଟରକୁ ଅଚଳ କରିଥିଲା । ତା ପରେ ଟାଙ୍ଗିରେ ତାର ମୁଣ୍ଡଟି କାଟି ଦେଇ ସିଧା ଦୌଡ଼ିଲା, ଘୋର ଘୋର ବଣ ଜଙ୍ଗଲ ଭିତର ଦେଇ । ତିରିଶ ମାଇଲ୍ ରାସ୍ତା ଏକା ନିଶ୍ୱାସକେ ଦୌଡ଼ି ସେ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର ହେଲା ।

ଗୋବିନ୍ଦ ସରଦାର ସାମାନ୍ୟ ଲୋକ ନୁହେଁ । ହାତରେ ତାର ଥାଏ ସବୁବେଳେ ବନ୍ଧୁକ । ବାଘ, ଭାଲୁଙ୍କ ଅପେକ୍ଷା ଲୋକେ ତାକୁ ବେଶୀ ଭୟ କରନ୍ତି । ବାଘ ଭାଲୁଙ୍କ ଅପେକ୍ଷା ସେ ଲୋକଙ୍କର କ୍ଷତି କରେ ଢେର ବେଶୀ, ତାକୁ ମାରିବା ପାଇଁ ଧେନୁଆ କମ୍ ସାହସ ଓ ବିଚକ୍ଷଣତା ଖର୍ଚ୍ଚ କରି ନାହିଁ ।

"କିଛି ବର୍ଷ ତଳେ ମେଳିଆ ରୂପଟସିଂର ମୁଣ୍ଡ କାଟି ଥିବାରୁ ସାହେବ ତୋତାକୁ ପାଞ୍ଚ ଟଙ୍କା ବକ୍‌ଶିସ୍ ଦେଇଥିଲା । ରୂପଟସିଂ ତ ଏକ ରକମ୍ ଭଲ ଲୋକ ଥିଲା । ସେ ସ୍ତ୍ରୀ ଲୋକଙ୍କ ଇଜ୍ଜତ ନେଇ ନାହିଁ,

କି କାହାର ଜମିବାଡ଼ି ଦଖଲ କରି ନାହିଁ । ସେ କେବଳ ଖଜଣାଖାନା ଲୁଟି କରିଥିଲା, ଆଉ କେତେ ଜଣ ସିପାହିଙ୍କୁ ମାରିଥିଲା । ଗୋବିନ୍ଦ ସରଦାର କିନ୍ତୁ ବଡ଼ ଭୟଙ୍କର ଲୋକ । ତାକୁ ମାରିଥିବାରୁ ଘିନୁଆକୁ ଅଧିକ ବକ୍‌ସିସ୍ ମିଳିବା ଉଚିତ ।"

ଘିନୁଆର ଗଳ୍ପ ଶୁଣି ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ଜଜ ସାହେବ ହସି ହସି କହିଲେ, "ହଁ, ଉପଯୁକ୍ତ ବକ୍‌ସିସ୍ ଦିଆଯିବ ।" ସରକାରୀ ଓକିଲ କହିଲେ, "ତେବେ ଏଠାକୁ ଖାସ୍ ଅଣା ହୋଇଛି ବକ୍‌ଶିସ୍ ଦିଆଯିବା ଲାଗି ।"

ଘିନୁଆ ଏହାକୁ ପରିହାସ ନ ମଣି ସତ ବୋଲି ମନେ କଲା । କାରଣ ହସ କୌତୁକ, ଥଟ୍ଟା ପରିହାସ ସେ ଜାଣେ ନାହିଁ । ତାର ଯେ ନିତାନ୍ତ ନିରାଟ ରସ ଶୂନ୍ୟ ପ୍ରକୃତି ।

ଶେଷରେ ରାୟ ଦିଆଗଲା—ପ୍ରାଣଦଣ୍ଡ । ଘିନୁଆ ଏହାର କୌଣସି ଅର୍ଥ ବୁଝିଲା ନାହିଁ । ପୁଣି ଜେଲ୍‌କୁ ଫେରାଇ ତାକୁ ବୁଝାଇ ଦିଆଗଲା ଯେ, ତାର ବକ୍‌ଶିସ୍ ପାଇବାର ଦିନ ଆସୁଛି ।

ଘିନୁଆ ସେ ପର୍ଯ୍ୟନ୍ତ ବୁଝିଲା ନାହିଁ ଯେ, ସେ ଜଣେ ଅପରାଧୀ ଓ ସେଥିଲାଗି ତାକୁ ପ୍ରାଣଦଣ୍ଡ ଆଦେଶ ହୋଇଛି । ଝପଟସିଂକୁ ମାରିବା ଓ ଗୋବିନ୍ଦ ସରଦାରକୁ ମାରିବା ଯେ ଏକା କଥା ନୁହେଁ, ତାହା ସେ ବୁଝିବ କାହୁଁ ? ସେ ଜାଣିଲା ନାହିଁ ଯେ ଗୋଟିଏ ଗୌରବର ବିଷୟ, ଅନ୍ୟଟି ଦୋଷାବହ । ଆଇନର ସୂକ୍ଷ୍ମଜାଲ ଭିତରେ ପଶିବାକୁ ତାର ମୁଣ୍ଡ ନାହିଁ । ସେ ଯେ ବଣୁଆ ସାନ୍ତାଳ ।

ସେ ମନେ ମନେ ଭାବେ, ଡୋରା ପାଁଶ ଟଙ୍କା ପାଇଛି ଝପଟ ସିଂହକୁ ମାରି । ସେଥିରୁ ବେଶୀ ନ ଦେଲେ କାହିଁକି ନେବ ? ସବୁ ଫେରାଇ ଦେଇ କହିବ, "କିଛି ନ ଦିଅ ପଛେ ସାହେବ, ଡୋରା ଠାରୁ ବେଶୀ ପାଇବା ମୋର ହକ୍ ।"

ଜେଲର ଅନ୍ଧାରିଆ ନିର୍ଜନ ଗୁମ୍ଫାରେ ରହି ସେ କେତେ କ'ଣ ଭାବେ । କଥାବାର୍ତ୍ତା କରିବାକୁ ସେ କାହାରିକି ଦେଖେ ନାହିଁ । କଥାବାର୍ତ୍ତା କହିବାକୁ ବି' ତାର ଆଗ୍ରହ ନ ଥାଏ । କେବଳ ବକ୍‌ଶିସ୍ ପାଇ ଘରକୁ ଫେରିବାକୁ ତାର ମନ ଛଟପଟ ହେଉଥାଏ ।

ଶେଷରେ ତାର ଫାଶିର ଦିନ ଆସିଲା । ତାକୁ ପଚରା ଗଲା, ତାର ଶେଷରେ କ'ଣ ଦରକାର । ସେ କହିଲା, "ମୋର ବକ୍‌ଶିସ୍ ।" "ଆଚ୍ଛା ବକ୍‌ଶିସ୍ ପାଇବୁ ଆ" କହି ତାକୁ ନେଇ ଗଲେ । ମୁଣ୍ଡରେ ତାର ଗୋଟିଏ କଳା କନାର ଖୋଳ ପିନ୍ଧାଇ ଦିଆଗଲା । ଘିନୁଆ ମନେ ମନେ ଭାବୁଥିଲା—ଆଖିରେ ଅନ୍ଧ ପୋଟଳି ଦେଇ ହାତରେ ତାର ସୁନା ରୂପା ଢାଳି ଦିଆଯିବ । ସରକାର ଘରର କେତେ ଫନ୍ଦି ଫିକର, କାଇଦା କଟକଣା ଅଛି । ଖାଲି ସିମିତ କ'ଣ ବକ୍‌ଶିସ୍ ଦିଆଯିବ ? ସେ ଘରକୁ ଫେରି ସବୁ ଦେଖାଇବ । କି ଖୁସି ହେବ ସ୍ତ୍ରୀ ତାର ସେ ସବୁ ଦେଖି ! ଭଲ ଘରଦ୍ୱାର କରି, ଜମିବାଡ଼ି କିଣି ସେ ସୁଖରେ ରହିବ । ଆଉ ତ ଗୋବିନ୍ଦ ସରଦାର ନାହିଁ ଯେ ସବୁ ଲୁଟି କରିନେବ ।

ହଠାତ୍ କ'ଣ ଗୋଟାଏ ଆସି ତା ବେକରେ ବାଜିଲା ।



[ 'ଆଧୁନିକ' ପ୍ରଥମ ସଂଖ୍ୟା, ମଇ ୧୯୩୬ ]

ନିତ୍ୟାନନ୍ଦ ମହାପାତ୍ର

# ପ୍ରେମର ପରିମାପକ

( ଆରମ୍ଭ )

ନାଲନ୍ଦ ବିଶ୍ୱବିଦ୍ୟାଳୟ ଯେତେବେଳେ ଉନ୍ନତିର ଚରମ ସୋପାନରେ ସେ ଆଜକୁ କେତେ ଦିନ—କେତେ ବର୍ଷ ବା କେତେ ଶତାବ୍ଦୀର ବିସ୍ମୃତ କାହାଣୀ ?

ସେହି ସମୟର କଥା ।

ବିଶ୍ୱରୂପ ବିଶ୍ୱବିଦ୍ୟାଳୟର ଜନୈକ କୃତୀ ଛାତ୍ର । ତେଣୁ ପାଟଳିପୁତ୍ର ରାଜାଙ୍କର ସୁଦୃଷ୍ଟିରେ ପଡ଼ିବା ସ୍ୱାଭାବିକ ।

ବିଶ୍ୱରୂପ ବୈଦ୍ୟ—ସୁବୈଦ୍ୟ । ତେଣୁ ପାଟଳିପୁତ୍ରର ପ୍ରତ୍ୟେକ ଗୃହସ୍ଥର ସେ ଥିଲ ଆଦରଣୀୟ ।

ବିଶ୍ୱରୂପ ଧର୍ମପରାୟଣ—ଧର୍ମତତ୍ତ୍ୱାନ୍ୱେଷୀ । ତେଣୁ ପାଠଶାଳାପୁନସ୍ଥ ପ୍ରତ୍ୟେକ ଭକ୍ତିର ସେ ହିଁ ଭାଜନ ।

ବିଶ୍ୱରୂପ ଦୟାଳୁ—ବିଶ୍ୱରୂପ ପରହିତୈଷୀ । ତେଣୁ ବିଶ୍ୱରୂପର ସ୍ଥାନ ପାଠଶାଳର ପ୍ରତ୍ୟେକ ନର ନାରୀର ହୃଦୟରେ ।

ବିଶ୍ୱରୂପ ସୁନ୍ଦର—ବିଶ୍ୱରୂପ ବଳିଷ୍ଠ ବିଶ୍ୱରୂପ ଯୁବା । ତେଣୁ ପାଠଶାଳାପୁରର ପ୍ରତ୍ୟେକ ଅନୂଢ଼ା ତରୁଣୀର ସେ ଥିଲା ଅନ୍ତରର ସ୍ୱପ୍ନ—ଭବିଷ୍ୟତର କଳ୍ପଦ୍ରୁମ ।

ରାଜପ୍ରାସାଦର ପ୍ରତ୍ୟେକ ଉତ୍ସବରେ ବିଶ୍ୱରୂପର ସ୍ଥାନ ସର୍ବାଗ୍ରେ । ରାଜଧାନୀର ଜନହିତକାମୀଙ୍କ ମଧ୍ୟରେ ବିଶ୍ୱରୂପ ଅଗ୍ରଣୀ । ରାଜ ସଭାରେ ସୁବକ ବିଶ୍ୱରୂପ ପୂଜ୍ୟ । ରାଜ୍ୟର ବାହାରେ ବିଶ୍ୱରୂପର ନାମ ସୁପରିଚିତ ।

ବିଶ୍ୱରୂପ ସୁପୁରୁଷ, ବିଶ୍ୱରୂପ ଧନୀ, ବିଶ୍ୱରୂପ ମହାନ୍, ବିଶ୍ୱରୂପ ବରେଣ୍ୟ ।

ବିଶ୍ୱରୂପ ରାଜ-କୋଷରୁ ବହୁ ମଣି ମୁକ୍ତା ପୁରସ୍କାର ପାଏ—ନବ ନବ ବିଜ୍ଞାନର ଆବିଷ୍କାର ନିମନ୍ତେ ।

ଏ ବର୍ଷ ବିଶ୍ୱରୂପ ଏକ ଅଭିନବ ଯନ୍ତ୍ରର ଆବିଷ୍କାରକ । ବାତ, ପିତ୍ତ ଓ କଫର ବୈଷମ୍ୟରେ ରୋଗର ଉତ୍ପତ୍ତି । କିନ୍ତୁ କୌଣସି ଗୋଟିକର ପ୍ରାବଲ୍ୟ ବା ଦୌର୍ବଲ୍ୟର ହେତୁ, ତାର ନିଶ୍ଚିତ ମତରେ, ଚନ୍ଦ୍ର ଏବଂ ସୂର୍ଯ୍ୟ ସହିତ ଇଡ଼ା ଏବଂ ପିଙ୍ଗଳାର ଅସାମଞ୍ଜସ୍ୟ । ଏହି ନବାବିଷ୍କୃତ ଯନ୍ତ୍ର ସାହାଯ୍ୟରେ ସେ ଏହା ପ୍ରମାଣ କରି ବିଜ୍ଞାନ ଜଗତକୁ ଚମତ୍କୃତ କରିଛି । ମଣିବନ୍ଧସ୍ଥ ନାଡ଼ି ଉପରେ ଏହି ଯନ୍ତ୍ର ସ୍ଥାପନ କଲେ ଶିରାର ରକ୍ତ ପ୍ରବାହ ସ୍ପଷ୍ଟ ଜଣାଯାଏ । ଯନ୍ତ୍ରର ସୂକ୍ଷ୍ମ ପ୍ରୟୋଗରେ ରକ୍ତଗ୍ରୁପ ଓ ତନ୍ତ୍ରଙ୍ଗର ହ୍ରାସ ବୃଦ୍ଧି ବୁଝାଯାଏ । ସୂକ୍ଷ୍ମତର ପ୍ରୟୋଗରେ ବାତ, ପିତ୍ତ ଓ କଫର

ବୈଷମ୍ୟ ବିଭିନ୍ନ ବର୍ଣ୍ଣ ଭେଦରେ ଲକ୍ଷିତ ହୁଏ । ସୂକ୍ଷ୍ମତମ ପ୍ରୟୋଗରେ ଚନ୍ଦ୍ର ଏବଂ ସୂର୍ଯ୍ୟର ଗତି ସହିତ ହୃଦ୍‌ବାୟୁର ପରିଚାଳନା ଏବଂ ନାଡ଼ୀସମୂହ ସହିତ ତାର ସମ୍ପର୍କ ସ୍ପଷ୍ଟ ପ୍ରତୀୟମାନ ହୁଏ ।

ବିଶ୍ୱରୂପର ନାମ ଆଜି ଭାରତ ବିଖ୍ୟାତ ହୋଇଛି । ମଗଧାଧିପତି ଆଜି ଆନନ୍ଦରେ ଉତ୍ଫୁଲ୍ଲ । ରାଜ୍ୟର ଶ୍ରେଷ୍ଠ ପଣ୍ଡିତ-ବର୍ଗ ଓ ଭାରତ-ବିଖ୍ୟାତ ବୈଜ୍ଞାନିକମାନଙ୍କର ସମାବେଶରେ ଏକ ବିରାଟ ସଭାର ଆୟୋଜନ କରି ସେ ବିଶ୍ୱରୂପକୁ ବିଶିଷ୍ଟ ପୁରସ୍କାର ଏବଂ ପ୍ରଶଂସା ପତ୍ରରେ ନିଜେ ସମ୍ମାନିତ କରିବାର ସ୍ଥିର କରିଛନ୍ତି ।

ଏକ ଶୁଭ ଦିବସରେ ସଭା ଆହୂତ ହେଲା । ବିଶ୍ୱରୂପ ତାର ଯନ୍ତ୍ର ଆଣି ଉକ୍ତ ଯନ୍ତ୍ରର କାର୍ଯ୍ୟକାରିତା ଏବଂ ସତ୍ୟତା ପ୍ରମାଣ କରିବାର କଥା ।

ଅସୁସ୍ଥ ଶରୀରରେ ଯନ୍ତ୍ରର ଉପଯୋଗିତା ବୁଝା ପଡ଼ିଲା । ବିଦେହର ସଭା-ପଣ୍ଡିତ, ଏକ ସୁସ୍ଥ ଶରୀରରେ ପ୍ରୟୋଗ କରିବା ନିମନ୍ତେ ଦାବୀ କଲେ । ତା' ନ ହେଲେ ସେ ଯନ୍ତ୍ରକୁ ସତ୍ୟ ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି ବୋଲି ସ୍ପଷ୍ଟ ଘୋଷଣା କଲେ । କିନ୍ତୁ ସମାଗତ ଜନତା ମଧ୍ୟରୁ ଗୋଟିଏ ହେଲେ ସମ୍ପୂର୍ଣ୍ଣ ସୁସ୍ଥ ଶରୀର ମିଳିବା ସମ୍ଭବପର ହେଲା ନାହିଁ । ତଥାପି ଈର୍ଷାପର ବିଦେହାଗତ ପଣ୍ଡିତ ଏପରି ପ୍ରମାଣ ଅଭାବରେ ଯନ୍ତ୍ରକୁ ମିଥ୍ୟା ବୋଲି ସଦର୍ପରେ କହିବାକୁ ଲାଗିଲେ । ଏପରି କ୍ଷେତ୍ରରେ ରାଜା ପୁରସ୍କାର ଦେବା ସମ୍ଭବପର ନୁହେଁ ।

ସଭାସ୍ଥ ପଣ୍ଡିତମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷିତ ହେଲା । କେହି ପୂର୍ଣ୍ଣ ସୁସ୍ଥ ଥିବାର ଦେଖା ଗଲେ ନାହିଁ ।

ଉପସ୍ଥିତ ଦର୍ଶକମାନଙ୍କ ଶରୀର ପରୀକ୍ଷା କରାଗଲା, ସେମାନଙ୍କ ମଧ୍ୟରୁ ମଧ୍ୟ ଜଣେ କେହି ନିରୋଗ ନ ଥିଲେ ।

ନିଜେ ବିଶ୍ୱରୂପ ନିଜର ଶରୀର ପରୀକ୍ଷା କରି ଦେଖିଲି—ସେ ମଧ୍ୟ ଅସୁସ୍ଥ ।

ଶେଷରେ ରାଜା ତାଙ୍କର ଶରୀରକୁ ପରୀକ୍ଷା କରିବାକୁ ଆଦେଶ ଦେଲେ, ସେ ମଧ୍ୟ ରୋଗମୁକ୍ତ ନ ଥିଲେ ।

ପୁଣି ହଂସପୁରର ମହିଳାମାନଙ୍କର ନାଡ଼ି ପରୀକ୍ଷା ହେଲା । କୌଣସି ଗୋଟିଏ ମହିଳା ଅଖଣ୍ଡ ସ୍ୱାସ୍ଥ୍ୟ ପାଇବାର ଦେଖା ଗଲା ନାହିଁ ।

ରାଜା ଅତି ଲଜ୍ଜାରେ ରାଣୀଙ୍କର ଶରୀର ପରୀକ୍ଷା କରିବା ନିମନ୍ତେ ଆଦେଶ ଦେଲେ । ରାଣୀମଧ୍ୟ ନିରୋଗ ନ ଥିଲେ ।

ପରିଶେଷରେ ରାଜା ନିରୁପାୟ ହୋଇ ଜେମ୍‌ଙ୍କ ଶରୀର ପରୀକ୍ଷା କରିବାକୁ ଆଦେଶ ଦେଲେ ।

ସମବେତ ସମସ୍ତ ଚିକିତ୍ସକ ଏକମତ ହେଲେ ଯେ, ଜେମା ହିଁ କେବଳ ଅଖଣ୍ଡ ସ୍ୱାସ୍ଥ୍ୟର ଅଧିକାରିଣୀ ।

କିନ୍ତୁ ଏ କି ଆଶ୍ଚର୍ଯ୍ୟ ! ଯନ୍ତ୍ରକୁ ନେଇ ଜେମାଙ୍କ ମଣି ବନ୍ଧରେ ସ୍ଥାପନ କଲା ମାତ୍ରେ ଜେମାଙ୍କର ନାଡ଼ିର ଗତି ହଠାତ୍ ଚଞ୍ଚଳ ହୋଇଗଲା । ସମସ୍ତ ପଣ୍ଡିତମାନେ ଚିତ୍କାର କରି ଉଠିଲେ "ମିଥ୍ୟା—ମିଥ୍ୟା—ମିଥ୍ୟା ।"

ହଠାତ୍ ଜେମାଙ୍କ ଅଙ୍ଗ ଅବଶ ହୋଇ ପଡ଼ିଲା । ନିଶ୍ୱାସ କ୍ଷୀଣ ହେବାକୁ ଲାଗିଲା । ବାକ୍ ରୁଦ୍ଧ ହୋଇଗଲା, କ୍ରମେ ଚୈତନ୍ୟହୀନ ହୋଇ ପଡ଼ିଲେ ।

ଜନତା ମଧ୍ୟରୁ ରୋଳ ଉଠିଲା—"ମିଥ୍ୟା—ମିଥ୍ୟା—ମିଥ୍ୟା ।"

ବିଶ୍ୱରୂପ ସ୍ତବ୍ଧ ଜଡ଼ ପିଣ୍ଡବତ୍ ଠିଆହୋଇ ରହିଥାଏ ।

ପଣ୍ଡିତମାନେ ପୁଣି କହି ଉଠିଲେ—"ଯାଦୁ—ଯାଦୁ—ଯାଦୁ ।"

ଜନତା ତାର ପ୍ରତିଧ୍ୱନି ଦେଲା—"ଯାଦୁ—ଯାଦୁ—ଯାଦୁ ।"

ବିଶ୍ୱରୂପର ଦୃଢ଼ ପଦ କମ୍ପିତ ହେଲା ।

ପଣ୍ଡିତମାନେ ପୁଣି ଗର୍ଜି ଉଠିଲେ—"ଭଣ୍ଡ—ଭଣ୍ଡ—ଭଣ୍ଡ ।"

ବିଶ୍ୱରୂପ ବିସ୍ମୟ ବିସ୍ଫାରିତ ନେତ୍ରରେ ଜନତା ଉପରେ ଦୃଷ୍ଟି କ୍ଷେପଣ କଲା । ଜନତା ତାର ସ୍ୱରରେ ତାର ଉତ୍ତର ଦେଲା "ଭଣ୍ଡ—ଭଣ୍ଡ—ଭଣ୍ଡ ।"

ବିଶ୍ୱରୂପ ଯନ୍ତ୍ରକୁ ଉଠାଇ ଖୁବ୍ ଜୋରରେ ଦୂରକୁ ଫିଙ୍ଗି ଦେଲା । ଯନ୍ତ୍ରଟି ଭାଙ୍ଗି ଚୂର୍ଣ୍ଣୀଭୂତ ହୋଇଗଲା । ସେହି ଶବ୍ଦ ସଙ୍ଗେ ସଙ୍ଗେ ରାଜାଜେମା ଚୈତନ୍ୟ ଲାଭ କଲେ ।

କୁହୁକୀ, ଭଣ୍ଡ ବିଶ୍ୱରୂପକୁ ରାଜାଦେଶରେ ନିର୍ବାସିତ କରାଗଲା ।

(ଶେଷ)

ବିଶ୍ୱରୂପ ତାର ସେ ଯନ୍ତ୍ରର ମାୟା ଭୁଲି ଯାଇଛି ।

ବିଶ୍ୱରୂପ ତାର ଆବିଷ୍କାରର ପୌରୁଷ ପାଶୋରି ଦେଇଛି ।

ବିଶ୍ୱରୂପ ସଭାର ଆକ୍ଷେପ, ଜନତାର ଅପମାନ ସ୍ମୃତି ପଟରୁ ଲିଭାଇ ଦେଇଛି ।

ବିଶ୍ୱରୂପ ତାର ନିର୍ବାସନ-ଦଣ୍ଡର ଅନ୍ୟାୟ ବିଚାର ଆଦୌ ମନରେ ଘେନି ନାହିଁ ।

ନାଳନ୍ଦର ଅମୂଲ୍ୟ ରତ୍ନ ବିଶ୍ୱରୂପ ଆଜି କ'ଣ ଅଛି ?

ମଗଧର ଗୌରବ ଗରିମା ବିଶ୍ୱରୂପ ଏବେ ମଧ୍ୟ କ'ଣ ବଞ୍ଚିଛି ?

ଭାରତର ଉଜ୍ଜ୍ୱଳ ଜ୍ୟୋତିଷ୍କ ବିଶ୍ୱରୂପ ଏବେ କି ଜୀବିତ ?

ଏ ପ୍ରଶ୍ନର ଉତ୍ତର କିଏ ଦେବ ? ହୁଏ ତ ସେ ନାଳନ୍ଦ ପାଇଁ, ମଗଧ ପାଇଁ—ଭାରତ ବର୍ଷ ପାଇଁ ମୃତ । ହୁଏତ ସେ ଦସ୍ୟୁଲୁ ବିଶ୍ୱରୂପ, ଚିକିତ୍ସକ ବିଶ୍ୱରୂପ, ଆବିଷ୍କାରକ ବିଶ୍ୱରୂପ, ଧର୍ମପ୍ରାଣ ବିଶ୍ୱରୂପ ଆଜି ଆଉ ନାହିଁ ।

କିନ୍ତୁ ବିଶ୍ୱରୂପ ଅଛି । ବିଶ୍ୱରୂପର ହୃଦୟ ଅଛି । ବିଶ୍ୱରୂପର ଅନୁଭୂତି ଅଛି—ବିଶ୍ୱରୂପର ପ୍ରାଣ ଅଛି । ବିଶ୍ୱରୂପର ଦୁଃଖ ଅଛି, ଯନ୍ତ୍ରଣା ଅଛି—ଅନ୍ତରର ପୀଡ଼ନ ଅଛି—ବୁକୁର ବେଦନା ଅଛି—ବିଶ୍ୱରୂପ ବଞ୍ଚିଛି—ସେ ମରି ନାହିଁ—ସେ ଯେ ମରି ପାରେ ନାହିଁ ।

ମଗଧର ସମ୍ବାଦ ହିମାଳୟର ତୁଙ୍ଗ-ଗିରିଶୃଙ୍ଗ-ଖଚିତ ଏହି ଅରଣ୍ୟ ଭିତରକୁ ପ୍ରବେଶ କରେ ନାହିଁ ।

ଗଙ୍ଗାର ସ୍ରୋତ କେବେ ଉଜାଣି ବହି ଆସେ ନାହିଁ ।

ମୌସୁମୀ ଅଘାତ ପାଇ ଯେ ଯାଏ, ଆଉ ସେ କେବେ ପ୍ରତ୍ୟାବର୍ତ୍ତନ କରେ ନାହିଁ ।

ଏଭଳି ଅର୍ଦ୍ଧ ଶତାବ୍ଦୀର ମୌସୁମୀ—ତା'ର କେତେକ କଣାବାହି ମୌସୁମୀ ଆଉ ଫେରି ନାହିଁ ।

ବିଶ୍ୱରୂପର ସାଧନା ଚାଲିଛି । ବିଶ୍ୱରୂପର ଦୁଃଖାନୁଭୂତି ବଢ଼ି ଚାଲିଛି ।

କିନ୍ତୁ ବିଶ୍ୱରୂପର ଇହକାଳ ନାହିଁ—ପରକାଳ ନାହିଁ । ବିଶ୍ୱରୂପର ଅଛି କେବଳ—ବର୍ତ୍ତମାନ । ବିଶ୍ୱରୂପ ବର୍ତ୍ତମାନ ଅଛି । ତେଣୁ ସେ ବର୍ତ୍ତମାନ । ତେଣୁ ସେ ଜୀବିତ ।

ବିଶ୍ୱରୂପର ଆତ୍ମବୋଧ—କାଳବୋଧ—ସ୍ଥାନବୋଧ କିଛି ନାହିଁ—ବିଶ୍ୱରୂପର ଅଛି କେବଳ ପ୍ରାଣ ।

ସେ ସେହି ପ୍ରାଣର ଅନୁଭୂତି ଚାହେଁ । ସେ ଯେ ବଞ୍ଚିଛି, ତା'ର ପ୍ରମାଣ ସେ ଚାହେଁ । ତାର ଦୁଃଖ ଯେ ସତ୍ୟ ସେ ସେତିକି ଜାଣିବାକୁ ଚାହେଁ ?

ରାଜକେମା ତାକୁ କ'ଣ ପ୍ରକୃତରେ ଭଲ ପାଇଥିଲେ ? ରାଜକେମାଙ୍କର ମୂର୍ଚ୍ଛା କ'ଣ ତାହାର ସ୍ପର୍ଶ ପାଇ ? ରାଜକେମାଙ୍କର ଚୈତନ୍ୟ କ'ଣ ତାର ଦୁଃଖ ଆଉ ଅପମାନରେ ?

ସେ ନିଶ୍ଚୟ ତା ଜାଣିବ । ରାଜାଜେମାଙ୍କ ନିକଟକୁ ଯାଇ ଜିଜ୍ଞାସା କରି ନୁହେ—ରାଜାଜେମାଙ୍କୁ ନ ପଚାରି ମଧ୍ୟ ସେ ତାହା ଜାଣିବ, ଏଇ ତାର ପ୍ରତିଜ୍ଞା, ଏଇ ତାର ସାଧନା, ଏଇ ତାର ପ୍ରାଣ, ଅନୁଭୂତି, ସବୁ ।

ଏହି ପଚିଶ ବର୍ଷକାଳ ସେ ଏହି ଏକ ଯନ୍ତ୍ରର ଆବିଷ୍କାର କରିବାରେ ଲାଗିଛି । ସେ ଯନ୍ତ୍ରକୁ ଯାହା ନିକଟରେ ରଖି ଦେବ, ଯନ୍ତ୍ରକୁ ସ୍ପର୍ଶ କରିଥିବା ଲୋକପ୍ରତି ତାର ହୃଦୟର ସ୍ନେହ, ପ୍ରୀତି, ଭକ୍ତି, ଦୟା, ଘୃଣା, ବିରକ୍ତି, ରାଗ ପ୍ରତ୍ୟେକର ଅନୁଭୂତି ପରସ୍ପରର ନିର୍ଦ୍ଦିଷ୍ଟ ସ୍ଥାନର ପରିମାଣ ଅନୁଯାୟୀ ଲୁଚିବା ପଡ଼ିବ । ଏହାହିଁ ଯନ୍ତ୍ରର ଉଦ୍ଦେଶ୍ୟ ।

ତାର ଶରୀର ପ୍ରତି, ସ୍ୱାସ୍ଥ୍ୟ ପ୍ରତି ଭ୍ରୂକ୍ଷେପ ନାହିଁ । ମରଣର ଚିନ୍ତା ନାହିଁ । ଆହାରର ଭାବନା ନାହିଁ । ଫଳ, ଫୁଲ ଯାହା ଗଛ ଉପରୁ ତା' ନିକଟରେ ପଡ଼େ, ସେତିକରେ ଉଦର ପୂର୍ତ୍ତି କରି ପିଣ୍ଡରେ ପ୍ରାଣ ରଖିଥାଏ ।

ପଚିଶ ବର୍ଷ ବିତି ଯାଇଛି । ଯନ୍ତ୍ରର ପିଣ୍ଡ ନିର୍ମିତ ହୋଇଛି, କିନ୍ତୁ ଯନ୍ତ୍ର ଜୀବଦାନ ପାଇ ପାରୁ ନାହିଁ । ମନୁଷ୍ୟର ହୃଦପିଣ୍ଡ, ମନୁଷ୍ୟର ଫୁସ୍ ଫୁସ୍, ମନୁଷ୍ୟର ଶିରା-ପ୍ରଶିରା ସମସ୍ତର କାର୍ଯ୍ୟ ହେଉଛି—କିନ୍ତୁ ହୃଦୟର ଅନୁଭୂତି ଓ ଅନୁଭୂତିର ମାତ୍ରା ଅନୁମିତ ହୋଇ ପାରୁ ନାହିଁ ।

ପଚିଶ ବର୍ଷ ଗଲାଣି । ତଥାପି ବିଫଳ ।

ହଠାତ୍ ଦିନେ ବିଶ୍ୱରୂପ ଭିତରେ ଅଦ୍ଭୁତ ଭାବନା ଜାଗ୍ରତ ହେଲା । ସେ ଚିନ୍ତା କଲା, ମନୁଷ୍ୟ ଭିତରର ସମସ୍ତ ପ୍ରକ୍ରିୟା ଏକ ପ୍ରକାର ଆଲୋକ ସାହାଯ୍ୟରେ ପ୍ରଦର୍ଶିତ ହେଉଛି । କିନ୍ତୁ ମନୁଷ୍ୟର ଅନୁଭୂତି ଆଲୋକର ଅନ୍ତରାଳରେ; ତେଣୁ ସେ ଟୋପଣାଯନ୍ତ୍ରଟାକୁ

ଅଲୋକ ସାହାଯ୍ୟରେ ଦେଖିବାକୁ ଚେଷ୍ଟା କରିବା ମୂର୍ଖତା । ସେ ଅନ୍ଧକାରର ପ୍ରକାର ଭେଦ ଆବିଷ୍କାର କରିବାକୁ ଚେଷ୍ଟା କଲା ।

ସାଧୁ ! ସାଧୁ ! ସାଧୁ ! ନିଜ କୃତିତ୍ୱର ପ୍ରଶଂସା ନିଜେ ଗାଇ ଉଠି ବିଶ୍ୱରୂପ ଦେଖିଲା ଯେ, ସମସ୍ତ ଠିକ୍ ଗଛ ପତ୍ରର ଅନୁଭୂତି ମଧ୍ୟ ସ୍ପଷ୍ଟ ବୁଝା ଯାଉଛି । ଗଛ ସମୀପରେ ରଖି ଲତାର କୌଣସି ଅଂଶ ଯନ୍ତ୍ରସ୍ଥ କଲେ ଗଛର ଲତାପ୍ରତି ଆବେଗ ବୁଝା ପଡୁଛି ।

ବିଶ୍ୱରୂପ ଆନନ୍ଦରେ ଉନ୍ମତ୍ତ ହୋଇ ଉଠିଲା । ଯନ୍ତ୍ରକୁ ଧରି ଚାଲିଲା ରାଜଜେମାଙ୍କ ନିକଟକୁ ।

· କିନ୍ତୁ ମଗଧର ପୂର୍ବ ରାଜା ମୃତ । ରାଜଜେମା ବିଦେହରେ ବିବାହିତା ।

ବିଶ୍ୱରୂପର ମସ୍ତିଷ୍କ ଘୂର୍ଣ୍ଣିଠାରୁ ଅଧିକ ବେଗରେ ଘୂରିବାକୁ ଲାଗିଲା । ସେ ପାଗଳ ପରି ବିଦେହ ଅଭିମୁଖରେ ତତ୍‌କ୍ଷଣାତ୍ ଯାତ୍ରା କଲା ।

ହିମାଳୟରୁ ଏକ ସନ୍ନ୍ୟାସୀ ମଗଧର ଜେମା ବିଦେହର ରାଜମାତାଙ୍କୁ ସାକ୍ଷାତ କରି ଦି ଗୋଟିଏ ଅଦ୍ଭୁତ ଯନ୍ତ୍ର ଉପହାର ଦେବାକୁ ଚାହେଁ,—ରାଜ୍ୟରେ ହାଲୋଳ ପଡ଼ିଗଲା ।

ରାଜାଙ୍କର ଅସମ୍ମତି ସତ୍ତ୍ୱେ ରାଜମାତା ନିଜେ ଉକ୍ତ ସନ୍ନ୍ୟାସୀଙ୍କୁ ଦର୍ଶନ ଦେବେ ବୋଲି କହିଲେ ।

ବିଶ୍ୱରୂପ ବିଜୟ ଉଲ୍ଲାସରେ ଲକ୍ଷ୍ୟ ପ୍ରାପ୍ତିର ଅସୀମ ଆନନ୍ଦରେ ବିଭୋଳ ହୋଇ ରାଜମାତାଙ୍କ ନିକଟକୁ ଗଲା ।

ଏ କ'ଣ ?

ଏ କି ସେହି ରାଜଜେମା—ଏ କ'ଣ ସେହି ମଗଧର ରାଜଜେମା ? ଜୁରୁଣ, ଦନ୍ତହୀନା, ଲୋଳିତ ଚର୍ମୀ, ପଳିତ କେଶୀ, ବୁଢ଼ୀ ବିଦେହର ରାଜମାତା କ'ଣ ସତେ ମଗଧର ସେହି ଅନିନ୍ଦ୍ୟ ସୁନ୍ଦରୀ, ଯୁବତୀ ରାଜଜେମା ?

ହାତରୁ ତାର ଯନ୍ତ୍ରଟି ଖସି ଚୂନା ହୋଇଗଲା ।

ସେ ବିଶ୍ୱରୂପ କୁଆଡ଼େ ଗଲା ? କିଏ ଜାଣେ ?

ସେ ନାଳନ୍ଦ, ସେ ମଗଧ, ସେ ବିଦେହ ଆଜି କେବଳ ଇତିହାସର ଉପକଥା ।



[ 'ଭଞ୍ଜ ପ୍ରଦୀପ' ୯ମ ଭାଗ, ୨ୟ ସଂଖ୍ୟା, ପୌଷ ୧୩୦୭,
ଡିସେମ୍ବର ୧୯୩୧ ]

ଗୋଦାବରୀଶ ମହାପାତ୍ର

# ଶେଷ ଦିବସ

( ଏକ )

ଖୋର୍ଦ୍ଧାର ୮୪ ସାଲ ବନ୍ଦୋବସ୍ତ ସମୟକୁ ନନ୍ଦପୁରର ବିଖ୍ୟାତ ମହାପାତ୍ର ବଂଶଟା ଗୃହ ବିବାଦ, ମାଲ ମକଦ୍ଦମା, ନିଶା ପଶାରେ କୁରୁବଂଶ ଅସ୍ତ ହେଲା ପରି ଶେଷ ହୋଇ ଆସିଥିଲା । ଭଙ୍ଗା ଚୂନପିଣ୍ଡା, ଗୋଟାକେତେ ଜୀର୍ଣ୍ଣ ଦୀର୍ଘ ନଡ଼ିଆ ଗଛ ଏବଂ ଲତାଚ୍ଛନ୍ନ ଦୁଇ ଗୁଡ଼ିଏ ପଥର କେବଳ ସେହି ପରିବାରର ପ୍ରେତ ସାକ୍ଷୀ ପରି ସଂସାର-ଅଳୀକତାର ବିରାଟ ସତ୍ୟ ପ୍ରକାଶ କରି ରହିଥିଲେ । ବିଲରୁ ଧାନ କଟା ସରିଲା ପରେ ଅଦିନରେ ଅସରାଏ ପାଣି ପାଇଲେ ନଡ଼ା ମୂଳରୁ ଯେପରି ପିଲ ବାହାରି ଫଳ ଧରେ, ଘରଡ଼ିହ, ବିଲବାଡ଼ି ବିକିବା ଦ୍ୱାରା ସେହି ବଂଶର କେତୋଟି ଅଯୋଗ୍ୟ ଉତ୍ତରାଧିକାରୀ ନାଆଁକୁ ମାତ୍ର ଚୂନପିଣ୍ଡା ମଣ୍ଡନ କରୁଥିଲେ । ୮୪ ସାଲ ବନ୍ଦୋବସ୍ତ ଶେଷକୁ ସବୁ ଶେଷ ହେଲା ।

ସେହି ଘଟଣାର ପ୍ରାୟ ତିରିଶ ବର୍ଷ ପରେ ଦିନେ ବଡ଼ ସକାଳେ ଜଣେ ରେଙ୍ଗୁନ ଫେରନ୍ତା ୮୦ ବର୍ଷର ବୃଦ୍ଧ ନନ୍ଦପୁର ଗାଁ ମୁଣ୍ଡେ ଆସି ପହଞ୍ଚିଲେ । ବୃଦ୍ଧଙ୍କ ମୁଖ ମଣ୍ଡଳରେ ସରସତାର ଚିହ୍ନ କିଛି ନ ଥିଲା । ସେ ଅର୍ଦ୍ଧ ପରିଚିତ ଭାବରେ ଏଣେ ତେଣେ ଗଛପତ୍ର, ବିଲବାଡ଼ି ସବୁଆଡ଼େ ଚାହୁଁଥିଲେ । ସତେ ଅବା ସେ ସବୁ ଚିହ୍ନିଥିଲେ କିମ୍ବା ଚିହ୍ନିବାକୁ ଚେଷ୍ଟା କରୁଥିଲେ । କପାଳରେ ବାର୍ଦ୍ଧକ୍ୟର ସ୍ପଷ୍ଟ ରେଖା ଅଙ୍କିତ କରି କ୍ଷୀଣ ଦୁର୍ବଳ ଦୃଷ୍ଟିରେ ବାଟରେ ଯିବା ଲୋକଙ୍କୁ ଚାହିଁ ପଚାରୁଥିଲେ—

"ବାବା, ଏ ଗାଁ ନା ନନ୍ଦପୁରଟି କି ?" ବୃଦ୍ଧଙ୍କୁ କିଏ ଉତ୍ତର ଦିଏ, କିଏ ବା ନ ଶୁଣିଲା ପରି ନିଜ କଥା ଭାବି ଆଡ଼େଇ ହୋଇ ଚାଲିଯାଏ ।

ଗାଁ ଯେମିତି ପାଖେଇ ଆସିଲା, ବୃଦ୍ଧ ପାଦେ ଆଗକୁ ଯାଇ ଥରେ ଠିଆ ହୁଅନ୍ତି, ଆଖିକୁ କୁଞ୍ଚିତ କରି ଗଛଟାକୁ, ବିଲଟାକୁ, ହୁଡ଼ାଟାକୁ ଥରେ ଚାହିଁ ପୁଣି ପାଦ ଚାଲନ୍ତି ।

ବୃଦ୍ଧ ଆଗରେ ଜଣକୁ ଦେଖି ପଚାରିଲେ—"ବାବା, ଏ ବାବା, ରହିଲ " ...

ବୃଦ୍ଧ ପ୍ରଶ୍ନ ପଚାରୁ ପଚାରୁ ବାଟୋଇ ଯାଇ ଦଶ ହାତ ଦୂରରେ ।

ବୃଦ୍ଧ ପୁଣି ଆଉ ଜଣକୁ ଆଗରେ ଦେଖି ବାଟ ଆଗୁଳିଲା ପରି ରହି ପ୍ରଶ୍ନ କଲେ—

"ବାବା, ଏ ଗାଁର ମଧୁବନ ମହାପାତ୍ରଙ୍କୁ ଜାଣ ? ଏ ନନ୍ଦପୁରଟି କି ?"

ସେ ଲୋକ ଟିକିଏ ଭାବିଲା ପରି ଚାହିଁ କହିଲା—"ହଁ ନନ୍ଦପୁର; ମାତ୍ର ଆମ ଗାଁରେ ସେପରି ଲୋକ ତ କେହି ନାହାନ୍ତି !"

ବୃଦ୍ଧ ଟିକିଏ ଥକି ଯାଇ କହିଲେ—"ହଁ, ନାହାନ୍ତି ତ, ଆଗେ ଥିଲେ । ଏ ନନ୍ଦପୁର ତ ? ଭାଇ ଭାଇ ଭିତରେ କଳି ଲାଗି ଶେଷକୁ ସବୁଯାକ ସମ୍ପତ୍ତି........"

ଉତ୍ତର ମିଳିଲା—"ଓହୋ...ସେଇ ମଧୁ ମହାପାତ୍ରଙ୍କ କଥା କହୁଚ ? ସେ ତ ଏବେ ଏଠି ନାହାନ୍ତି । ତାଙ୍କ ଘର ଦ୍ୱାର ନାହିଁ, ପରିବାରରେ କେହି ନାହାନ୍ତି ।" ଏହା କହି ଲୋକଟା ପଛକୁ ଚାହିଁ ଚାହିଁ ତା କାମରେ ଚାଲିଗଲା; ମାତ୍ର ଟିକିଏ ସେ ବିଳମ୍ବ କରିଥିଲେ ଦେଖିଥାନ୍ତା ତା କଥାରେ ବୃଦ୍ଧ କିପରି ନିତାନ୍ତ ଶୁଖିଗଲେ ଆଖିରୁ ଦୁଇ ଟୋପା ଲୁହ ଗଡ଼ାଇ ଦେଇ କୁଞ୍ଚ କାନିରେ ପୋଛି ଦେଲେ । ଶୁଣିଥାନ୍ତା ବୃଦ୍ଧଙ୍କ କେଉଁ ଅନ୍ତରରୁ ବାହାରି ଗୋଟିଏ ଦୀର୍ଘଶ୍ୱାସ ସେଠା ପବନରେ ମିଶିଗଲା । ବୃଦ୍ଧ କିଛି କହିଲେ ନାହିଁ, ଏଣେ ତେଣେ ଆଉ ଚାହିଁଲେ ନାହିଁ, ବୟସ ଭାରରେ ତଳକୁ ନଇଁ ଆସିଥିବା ମୁଣ୍ଡକୁ ଆହୁରି ଟିକିଏ ନୁଆଁଇ ଦେଇ ସେହିପରି ଦୋ ଦୋ ଚହଲା ଭାବରେ ପୁଣି ଚାଲିଲେ ।

ବୃଦ୍ଧ ବାଟରେ ଚାଲି ଚାଲି ଆଉ କାହାକୁ ଭେଟିଲେ ନାହିଁ । ଜଣକୁ ଝୁଣ୍ଟିଲେ; ମୁହଁ ଟେକି କହିଲେ—"ନାରାୟଣ, ନାରାୟଣ !"

ସେ ଲୋକ କଣ କହି ଆସୁଥିଲା; ମାତ୍ର ବୃଦ୍ଧଙ୍କର ଚିନ୍ତାପୂର୍ଣ୍ଣ ମୁଖ ମଣ୍ଡଳ ଦେଖି ହଠାତ୍ ଥକିଗଲା ।

ବୃଦ୍ଧ ପଚାରିଲେ—"ବାବା, ଏ ତ ନନ୍ଦପୁର ?"

"ହଁ ନନ୍ଦପୁର । କଣ ହେଲା ? କେଉଁଠୁ ଆସିଲେ ?"

"ଆସିଲି, ଅନେକ ବାଟ । ସେତେ ବାଟ କଥା ତୁ କାହୁଁ ବୁଝିବୁରେ ବାବୁ ? ସଂସାରର ଏ ପାଖରୁ ଏବେ ଆର ପାଖକୁ ଯାଉଚି । ଏ ଗାଁର ବାହ୍ମଣପଡ଼ାକୁ ଜାଣୁ ?"

"ହଁ ଜାଣେ, ଏବେ ତ ସେ ପିଣ୍ଡାରେ ବସିଛନ୍ତି ।"

"ବସିଛନ୍ତି ? ଅଚ୍ଛା ବାବା, କୁଆଡ଼େ ଯାଉଥିଲୁ ଯା, ମୁଁ ଯାଉଚି ।"

ସେ ଚାଲିଗଲା; କିନ୍ତୁ ଏ ଚାଲି ପାରିଲେ ନାହିଁ । ଚାଲିଛନ୍ତି ବୋଲି ମନେ କରି କେତେ ସମୟ ଠିଆ ହେଲେ । ଯେତେବେଳେ ଗାଁର ଦୁଇ କୁକୁର ଦୁଇଟା ପାଖରେ ଆସି ଭୁକିଲେ ସେ ଜାଣିଲେ ଯେ, ନିଜେ ଠିଆ ହୋଇଛନ୍ତି । ପୁଣି ଠେଙ୍ଗାକୁ ଠୁକ୍ ଠୁକ୍ କରି ଗାଁର ଦୁଇ ସାହିକୁ ଚାହିଁ ଚାହିଁ ଗାଁ ଭିତରେ ପଶିଲେ ।

( ଦୁଇ )

ବାହିନୀପତି ନନ୍ଦପୁର ଗାଁର ଜଣେ ଜଣାଶୁଣା ଲୋକ; ମାତ୍ର ୮୪ ସାଲ ବନ୍ଦୋବସ୍ତ ସମୟକୁ ସେ ଦାଣ୍ଡର ଭିକାରୀ ପରି ଥିଲେ କହିଲେ ଚଳିବ । ବନ୍ଦୋବସ୍ତ ବେଳେ ଯେ ମାଲି ମକଦ୍ଦମା ହୁଏ, ଜମିଦାରୀ ନାଁ ରେ କରିବାପାଇଁ ଯେ ଆନ୍ଦୋଳନ ଚାଲେ, ବାହିନୀପତି ସେଥିରେ ସେହି ସମୟରେ ଜଣେ ନେତା ଥିଲେ । ଦୁଇଜଣଙ୍କ ଭିତରେ ବିବାଦ ହେଲେ ଦୁଇ ଜଣଙ୍କର ଏକା ପରି ବନ୍ଧୁ ରୂପେ ସେ କାମ କରନ୍ତି; ତାହା ଫଳରେ କିଛି ରୋଜଗାର ମଧ୍ୟ କରନ୍ତି । ସେହି ସମୟରେ ତାଙ୍କ ରୋଜଗାରଟା ଏତେ ବେଶୀ ହେଲା ଯେ, ଗାଁର କେତୋଟା ଘର ଏକା ବେଳକେ ଭାଙ୍ଗିଗଲା ଏବଂ ସେହି ମାଡ଼ରେ ଗାଁର ନାମଜାଦା ମଧୁ ମହାପାତ୍ରେ ରାଜ୍ୟ ଛାଡ଼ି ରେଙ୍ଗୁନ ପଳାଇଲେ ।

ବାହିନୀପତିଙ୍କର ଘର ଗାଁର ସମସ୍ତଙ୍କ ଘର ପରି ନୁହେଁ । ତିରିଶ ବର୍ଷ ତଳେ ଯେଉଁଠି କୁଡ଼ିଆର ଚାଳ ଭାଜିବ କି ଠିଆ ହୋଇ ରହିବ ଏପରି ଅବସ୍ଥାରେ ଥିଲା, ତିରିଶ ବର୍ଷ ପରେ ସେଠାରେ ନେଇରେ ମୁଣ୍ଡ ଠେକିଲା ପଥର, ଇଟା ଚୂନ, ସିମେଣ୍ଟର ଏକ ବିରାଟ ପକ୍କା । ଯେଉଁଠି ଗାଁର କାହାର ଦୃଷ୍ଟି କେବେ ପଡ଼ୁ ନ ଥିଲା, ସେଠି ସମସ୍ତଙ୍କ

ଦୃଷ୍ଟି ସବୁବେଳେ ପଡ଼ୁଥିଲା । ରେଙ୍ଗୁନ ଫେରନ୍ତା ବୃଦ୍ଧ ବ୍ୟକ୍ତି ସେହି ଦୁଆର ମୁହଁରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲେ । ବାହୁନୀଦାଉ ପ୍ରଥମେ ତାଙ୍କୁ କୁଳ ବାବାଜୀ ବୋଲି ମନେ କରିଥିଲେ; ଦୁଇ ଚାରି ପଦ କଥାବାର୍ତ୍ତା ପରେ ଗୋଟାଏ ହଜିଥିବା ଜିନିଷ ପାଇଲା ପରି ତାଙ୍କୁ କୋଳ କରି ପକାଇ କହିଲେ—

"ମଧୁ, ମଧୁ, ମଧୁ ଆସିଲୁ ? ଭାଗ୍ୟ, ଭାଗ୍ୟ ଏ ଗାଁର । ସବୁ ଭଲ ତ ! ବଡ଼ ଆଶ୍ଚର୍ଯ୍ୟ କଥା, ଚିହ୍ନି ପାରିଲି ନାହିଁ । ଚିହ୍ନି ପାରିଲି ନାହିଁ ବୋଲି କଣ ମନେ ରଖି ନ ଥିଲି ? ହେଇଟି ତ ଗଲା ମାସରେ ପିଲାଙ୍କୁ ବସାଇ କହୁଥିଲି—ହାଁ, ଏଇ ତ ବଡ଼ ପୁଅ, ଯେତେବେଳେ ପିଲା ହୋଇଥିଲା । 'ହେ ରଘୁ, ମାଧିରେ, ବନା ! ଆରେ ଆସରେ ଆସ, ଗାଁର ଜଣେ କୁଳବୃଦ୍ଧ ଆସିଛନ୍ତି—ହଁ ଭାଇ, ଆଗ ଗାଧୁଆ ପାଧୁଆ ହେଉ, ଖିଆପିଆ ହେଉ, କଥାବାର୍ତ୍ତା ଅନେକ ଅଛି ।"

ଏ ସବୁ କଥା ମଧୁ ମହାପାତ୍ରଙ୍କର ଏ କାନ ଦେଇ ସେ କାନେ ଯାଉଥିଲା ବୋଧହୁଏ; କାରଣ ସେ କେବଳ ଏକ ଲକ୍ଷ୍ୟରେ ଚାହିଁଥିଲେ । ବୋଧହୁଏ ତିରିଶ ବର୍ଷ ତଳର ଗୋଟାଏ ସ୍ୱପ୍ନମୟ ଜଗତକୁ ଦେଖୁଥିଲେ ।

ଖିଆପିଆ ସରିଲା, ଦୁଇ ବୁଢ଼ା ଏକାଠି ବସି କଥାବାର୍ତ୍ତା ହେଉ ହେଉ ମଧୁ ମହାପାତ୍ରେ ପଚାରିଲେ—"ହଁ ଭାଇ, ସବୁ ତ ହେଲା, ତା ପରେ କଣ ହେଲା ?"

"ଆଉ ହବ କଣ ? ସେ ଅଳ୍ପ ଦିନ ଭିତରେ ପାଗଳ ହୋଇଗଲା ।"

"ପାଗଳ, କଣ କହୁଚୁ ?"

"ଆଚ୍ଛା ଭାଇ, ପାଗଲ ନ ହେବାକୁ କିଛି କଣ କାରଣ ଥିଲା ? ଏତେବେଳେ ଆଉ କଥା ଲୁଚାଇଲେ କଣ ହେବ ? ବିଶ୍ୱାସରେ ଯେଉଁ ଦିନ ତା ଘରୁ ଦଲିଲ ପତ୍ର ନେଇ ଆସିଲି, ତା ସହିତ ତା ଘରର ସବୁ ସମ୍ପତ୍ତି ଗହଣା ତୋଳା ସୁନା ଆସିଥିଲା ।"

ବୃଦ୍ଧ ମଧୁ ମହାପାତ୍ରେ ପଥର ମୂର୍ତ୍ତି ପରି କେବଳ ଏକ-ଲୟରେ ଦୂର ଅତୀତକୁ ଚାହିଁ ରହିଲେ ।

ବାହ୍ମଣୀପତି କହିଲେ—"ତୁମକୁ ଏବେ ଲୁଚାଇ କିଛି କାମ ଅଛି ? ସୁନା କଥା ତୁମକୁ ସେତେବେଳେ କିଛି କହି ନ ଥିଲି । କହନ୍ତି ବା କପରି ? ସୁନା ମୁଁ ରଖିଲି, ଚୋରି ମାଲରେ ତୁମେ ଧରା ପଡ଼ିଲ, ମନେ ପଡ଼ୁଛି ?"

"ହଁ, କାଲିପରି ମନେ ପଡ଼ୁଛି । ମନେ ପଡ଼ୁଛି. ଗୋଟାଏ ପେଟରୁ ଦୁଇଟା ଭାଇ ବାହାରି ଶେଷକୁ ସାତ ଶତ୍ରୁପରି ଖୋରଧା କଚେରିରେ ସବୁ ସମ୍ପତ୍ତି ଶ୍ରାଦ୍ଧ କରି ଆସିଲୁଁ । ବାକି ଯାହା ଘର ଖଣ୍ଡିକ ଥିଲା, ତାକୁ ଛାଡ଼ି ଆଗ ମୁଁ ଚାଲିଗଲି । ଜାଣି ନାହିଁ କଣ ତୁମେ ?"

"ହଁ ଜାଣେ ଭାଇ, ମନେ ପଡ଼ୁଛି ଠିକ୍ କାଲିର କଥା ପରି । ଏଇ ଯେ ମୋର ଘର ଦ୍ୱାର ସବୁ ତ ତୁମରି ବୋଲିବାକୁ ହେବ । ଏତେବେଳେ ସତ କଥା ଲୁଚାଇଲେ ପାପ ସିନା ।"

ମଧୁ ମହାପାତ୍ରେ ଗୋଟାଏ ହତାଶାର ଦୀର୍ଘଶ୍ୱାସ ଛାଡ଼ିଲେ; ତା ପରେ ପଚାରିଲେ, "ଆଚ୍ଛା, ମୁଁ ଗିବା ପରେ ଏମାନେ କ'ଣ କଲେ ?"

"କରିବେ ଆଉ କ'ଣ ? ତୁମେ ଥିବା ଆଗରୁ ତ ସାତ ଜଣ ମରିଥିଲେ । କେବଳ ରଘୁନାଥ ସ୍ତ୍ରୀ ଓ ଛୋଟ ପିଲାଟିକୁ ନେଇ ସେଇ ଘରେ ରହିଲା, ସେମାନେ ଯେବେ ଭଲରେ ରହିଥାନ୍ତେ···"

"ଆଉ ଭଲରେ କଣ—" କହି ମଧୁ ଆଖି ଛଳ ଛଳ କରିଦେଲେ ।

"ହୁଁ ଭଲରେ ହୋଇଲେ ପାଗଳ ନ ହୋଇ—"

"ସେ କଣ ସଙ୍ଗେ ସଙ୍ଗେ ପାଗଳ ହୋଇଗଲା ?"

"ନା, ସ୍ତ୍ରୀ ଓ ପିଲାଟି ମଲା ପରେ ।"

ମଧୁ ଛାତ ଉପରକୁ ଚାହିଁ ଦେଇ କହିଲେ—"ଭଗବାନ ! ରଘୁ କଣ ସେ ପର୍ଯ୍ୟନ୍ତ ଭଲ ଥିଲା ?"

"ନା, ତାହା ଆଗରୁ ମଧ୍ୟ ତାର ମୁଣ୍ଡ ବିଗିଡ଼ିଲା ପରି ହୋଇଥିଲା । ଦିନେ ସେ ମୋ ଦୁଆରେ ଆସି ପହଞ୍ଚିଲା; କହିଲା— "ସବୁ ତ ସୁନା ଚୋରେଇ ନେଲ, ଗୋଟିଏ ମୋହର ହେଲେ ଦିଅ । ତାକୁ ବିକ ଭାଙ୍ଗି ପିଲାଟି ପାଇଁ ଔଷଧ ଠିକଏ କରିବି ।"

"ତୁମେ କଣ ଦେଲ ?"

ବାହ୍ମଣୀପତି ହଠାତ୍ ଉତ୍ତର ଦେଲେ, "ଦିଅନ୍ତି କିପରି ? ଚୋର ବୋଲି କଣ ଦାଣ୍ଡରେ ନିଜେ ଧରା ଦିଅନ୍ତି ?"

"ତେବେ କଣ କହିଲ ?"

"ଦୁଇ ଅଣା ପଇସା ଦେଇ ଦାଣ୍ଡ ଦୁଆରୁ ଫେରାଇ ଦେଲି ।"

ମଧୁ ମହାପାତ୍ରେ ଆଖି ଛଳ ଛଳ କରି ଉତ୍ତର ଦେଲେ— "ଫେରାଇ ଦେଲ ? ଅହା, ଦଶ ବାଟି ବାଲର ଭାଗୀଦାର ସେ ...... ଦି ଅଣା ପଇସା ? ମୁଁ ହେଲେ ଜାଣିଥାନ୍ତି !"

"ଭାଇ, ଏତେବେଳେ ଦୁଃଖ କଲେ ଆଉ କି କଥା ଫେରି ଆସିବ ? ମୁଁ ଏବେ ମିଛ କହୁ ନାହିଁ ବୋଲି ତୁମକୁ ସତ କହୁଛି । ଫେରାଇ ଦେଲି ସତ; ମାତ୍ର ମନ ମୋର ଶାନ୍ତିରେ ନ ଥିଲା । ପିଲାଟି ଜ୍ୱରରେ ଏବଂ ସ୍ତ୍ରୀ ହଇଜାରେ ଗ୍ଲଲି ଯିବା ପରେ ରଘୁ ମୋ ପାଖକୁ ବହୁବାର ଆସିଛି । ମୁଁ କୌଣସି ଥର ତୁଚ୍ଛା ହାତରେ ଫେରାଇ ନାହିଁ; କିନ୍ତୁ ମୁଁ କି ଜାଣେ ତାର ଭିତର କଥା ? ସେ ଯେ କିଛି କିଣେ ନାହିଁ, କିଛି ଖାଏ ନାହିଁ, ଘରେ ଶୁଏ ନାହିଁ—ପରେ

ଜଣା ପଡ଼ିଲା । ଦିନେ ସକାଳେ ଦେଖିଲା ବେଳକୁ ଏଇ ଆମ ଦାଣ୍ଡ ଦୁଆରେ ସେ ଶୋଇଛି ! —ତାର ପ୍ରାଣ ବାୟୁ ସେତେ-ବେଳକୁ ଉଡ଼ି ଯାଇଛି !! ଧିଁ । ଧପଡ଼ ହୋଇ କେତେ ଚେଷ୍ଟା କଲି ! କିନ୍ତୁ ଭାଇ, ଯେ ଗିବା କଥା ସେ କି ଆଉ ଆସେ ? ରଘୁ ଆସିଲା ନାହିଁ ।”

“ଆସିଲା ନାହିଁ, ଗଲା ? ଗଲା ରଘୁ ?” କହି ମଧୁ ମହାପାତ୍ରେ ଆଖି ତରାଟି ଉଠିବାକୁ ଚେଷ୍ଟା କଲେ ।

ବାହୁନୀପତି ଟିକିଏ ଆଶ୍ଚର୍ଯ୍ୟ ହୋଇ ତାଙ୍କ ହାତ ଧରି ବସାଇ କହିଲେ—“ଭାଇ, ବାଇ୍‌ୟା ହେଲ କି ? ଏ ମାୟା ସଂସାରରେ କିଏ କାହାର ? ରଘୁ ତ ଗଲା; ମାତ୍ର ଦେଖିଲି, ସେ ମୋ ଠାରୁ ନେଇଥିବା ପଇସାରୁ କଡ଼ାଏ ହେଲେ ଖର୍ଚ୍ଚ କରି ନ ଥିଲା । ପୁଅ ମାଇପ ମଲା ପରେ ସେ ଯେତେବେଳେ ଏଣେ ତେଣେ ବାୟା ପରି ବୁଲୁଥିଲା, କହୁଥିଲା—“ପଇସା ଜମାଉଛି, ଝିଅ ପାଇଁ ଓଷୁଅ କରିବି ।” ତା କଥା ଶୁଣି ଲୋକେ ହସୁଥିଲେ । ସେ ମଲାଣି, ତା ପାଇଁ ଆଉ ଓଷୁଅ କଣ ? କିନ୍ତୁ ରଘୁ ଯାହା କହୁଥିଲା ମିଛ କହୁ ନ ଥିଲା । ତାକୁ ଯେତେବେଳେ ଟେକି ଉଠାଇ ମଶାଣିକୁ ନିଆଗଲା, ତା ମୁଣ୍ଡ ତଳୁ ଗୋଟିଏ କନା ବୁଜୁଲା ଭିତରୁ ସାତ ଟଙ୍କାର ପଇସା ବାହାରିଲା ! ଅହା, ବିଚରା ବାୟା ପରି ହୋଇ ମରି ଯାଇଥିବା ପିଲାଙ୍କ ପାଇଁ ଓଷୁଅ କରିବ ବୋଲି ପେଟକୁ ନ ଖାଇ ପଇସା ଜମାଉ ଥିଲା । କି ସ୍ନେହ !”

ସେତେବେଳକୁ ମଧୁ ମହାପାତ୍ରଙ୍କର ବାହାର ଜ୍ଞାନ କିଛି ନ ଥିଲା । ସେ ହଠାତ୍ ଉଠି ପଡ଼ି କହିଲେ—“ବାହୁନୀପତି, ମୁଁ ଯାଉଛି ।”

“ଯାଉଛ ? କୁଆଡ଼େ ?”

"ରଘୁକୁ ଡାକ ।"

"ରଘୁ, ବାସ୍ୟା ହେଲ କ ? ସେ ପସ୍ ମରିଚ, ଆଜକ ହେଲଣି ଅଣତିରଶ ବର୍ଷ ।"

ମଧୁ ମହାପାତ୍ରଙ୍କର ସେହି ଶିଥିଳ ହାଡ଼, ମାଂସ, ରକ୍ତ ତଳେ ସତେ ଅବା ଗୋଟାଏ ଅଗ୍ନେୟ ଗିରି ଉଠିଲା । ସେ ଚମକିଲା ପରି କହିଲେ—"ହଁ, ଜାଣେ, ଯାଉଚି ଡାକି ଆଣିବି । ତୁମର ଆଗରେ ମୁକାବିଲା କରାଇବା, ମୁଁ ଦୋଷୀ କି ତୁମେ ଦୋଷୀ ! ସେ ମରିବାରେ ମୁଁ ଦାୟୀ କି ତୁମେ ଦାୟୀ ! ଏବେ ମଧ ବେଳ ଅଛି ଭାଇ, ଯାଉଚି ।"

ଏହା କହି ଝଡ଼ ଉଠିଲା ପରି ସେ ଉଠି ଦାଣ୍ଡକୁ ବାହାରି ପଡ଼ିଲେ । ଆକାଶରେ, ଖୁବ୍ ଉଚ୍ଚରେ, କେଉଁ ସ୍ୱର୍ଗ ଦେଶରେ ତାରା ଗୁଡ଼ିକ ତଳକୁ ଚାହିଁ ରହିଥିଲେ । ନନ୍ଦପୁର ଗାଁର ଚାଳ କୁଡ଼ିଆ ତଳେ କେତେ ମହାପ୍ରାଣୀ ଅର୍ଦ୍ଧ ଗ୍ରାସରେ, ଅନାହାରରେ, ଅଭାବରେ, ଅସୁବିଧାରେ ଶୋଇବା ନାମରେ ଆଖି ବୁଜିଥିଲେ । ବାହାଘାପଡି ଡାକ ପକାଇଲେ —

"ମଧୁ ଭାଇ !"

ଗାଁ ମୁଣ୍ଡେ ମଧୁ ଭାଇଙ୍କ ଡାକ ଶୁଭିଲା—"ରଘୁ ! ହେ ରଘୁ !"

ଲୋକେ ପଛରେ ଧାଇଁଲେ; ଡାକଲେ, "ମହାପାତ୍ରେ !"

ଗାଁ ଆମ୍ବ ତୋଟା ଗହଳରେ ମଶାଣି ଭିତରେ ଶବ୍ଦ ଶୁଭିଲା, ରଘୁ—ରଘୁ—ରଘୁ—

ରଘୁ ତ ଫେରିଲା ନାହିଁ, ମଧୁ ମହାପାତ୍ରେ ମଧ୍ୟ ଫେରିଲେ ନାହିଁ । ତା ଅରଦିନ ସକାଳେ ମଶାଣି ଗଛରୁ ମଧୁ ମହାପାତ୍ରଙ୍କ ଦେହକୁ ଦଉଡ଼ି କାଟି ଯାଇ ଦାହ କରାଗଲା । ଏବେ ମଧ୍ୟ ନନ୍ଦପୁରରେ ଗୋଟାଏ କିମ୍ବଦନ୍ତୀ ଅଛି ଯେ, ରାତି ନିଛାଟିଆ ହେଲେ ସେଠା ମଶାଣି ଭିତରେ 'ରଘୁ' ଶବ୍ଦ ଶୁଭେ । ଅଉ ମହାପାତ୍ର ବଂଶର ସେହି ମେଲା ଓଳ ଉପରେ କିଏ ଜଣେ ବୁଢ଼ା ନଇଁ ନଇଁ କାହାକୁ ଖୋଜି ଖୋଜି ବୁଲିଲା ପରି ଦେଖାଯାଏ ।



[ 'ସହକାର' ୨୨ଶ ଭାଗ, ୨ୟ ସଂଖ୍ୟା, ଜ୍ୟେଷ୍ଠ ୧୩୪୮, ମଇ ୧୯୪୧ ]

ରାଜକିଶୋର ରାୟ

# ଦ୍ୱିତୀୟ ଢଢ୍‌ପୁରୁଷ

ବିଶ୍ୱ ବିଦ୍ୟାଳୟର ସୌଧ ସମ୍ମୁଖରେ ଯେଉଁ ଦେଶ ଗୌରବ ମୂର୍ତ୍ତିଟି ଅଜ୍ଞ ପଦ ପୃଷ୍ଠରେ ସୁଶୋଭିତ ହୋଇ ମନୋଜ୍ଞ ଦିଶୁଛି, ତାହାର ପାଖରେ ମୁଁ ଆସି ଛିଡ଼ା ହେଲି । ପରୀକ୍ଷା ଗୃହଟି ମୁଖର ହୋଇ ଆସିଲଣି । ଆଉ ଅଧ ଘଣ୍ଟା ପରେ ଅର୍ଥନୀତି, ରାଜନୀତି, ଇତିହାସ, ସାହିତ୍ୟ, ଗଣିତ ଓ ଦର୍ଶନ ବିଷୟରେ ପରୀକ୍ଷାର୍ଥୀ କଲମ ଚଲାଇବେ । ଆଜି ଆଗରୁ କେତେ ସୁଠାମ ଯୁବକ କେତେ ଶୋଭନା ଯୁବତୀଦଳ ପରୀକ୍ଷା ଗୃହ ଅଭିମୁଖରେ କପାଳ ଉପରେ ଗଭୀର ଚିନ୍ତାର ରେଖା ଫୁଟାଇ ଗଲିଛନ୍ତି । ଅର୍ଦ୍ଧାସନ ଓ ଅନିଦ୍ରାରେ କ୍ଳାନ୍ତ ଚକ୍ଷୁର ଦୀପ୍ତି ମଉଳି ଯାଇଛି ।

ଚଣ୍ଡୀର ଭାଲ ପଟ୍ଟ ସିନ୍ଦୂର କପୋଳରେ ଲେଖି ଯେଉଁ ଯୁବକଟି ମୂର୍ତ୍ତି ପାଖରେ ଶିର ଅବନତ କଲା, ତାକୁ ମୁଁ ନିରୀକ୍ଷଣ କଲି କିଛି କାଳ ପାଇଁ । ତାର କଲମରେ ସିନ୍ଦୁର ଚିହ୍ନ; କଣ୍ଠରେ ସିନ୍ଦୂରର ତିରେଖା; ରୁମାଲରେ ଶୁଷ୍କ ତୁଳସୀଦଳ । ବିଗ୍ରହକୁ ନମସ୍କାର କରି ସେ ସ୍ତୁତି କଲା । ବିଦ୍ୟାସାଗର, ତୁମେ ସହାୟ ହୁଅ; ସାହିତ୍ୟ ଦର୍ପଣର ଦଶମ ଅଧ୍ୟାୟରୁ ପ୍ରଶ୍ନ ଆସିଲେ ମୁଁ କଅଣ କରିବି ? ମୁହଁରେ ତାର ନିରାଶାର ପ୍ରକାଶ । ଆଉ ଥରେ ମୂର୍ତ୍ତିଟିକୁ ଧ୍ୟାନ ଦେଇ ବିଗ୍ରହର କଣ୍ଠ ବିଲମ୍ବିତ ଦୀର୍ଘ ପୁଷ୍ପ ଦାମରୁ ଗୋଟିଏ ରକ୍ତ ଜବା ତୋଳି ସେ ଫେରି ଗଲା—ଦେଖିଲା ମୋର କୌତୁହଳ ଦୃଷ୍ଟି ତାହାର ମୁହଁ ଉପରେ ପଡ଼ିଅଛି ।

—ମହାଶୟ, ଆପଣ ଜଣେ ପରୀକ୍ଷାର୍ଥୀ କି ?

ଆତ୍ମ ଗୋପନ କରିବାର କିଛି ଆବଶ୍ୟକତା ନାହିଁ ଭାବି ମୁଁ କହିଲି—ହଁ ।

ଯୁବକଟି ଉତ୍ସାହିତ ହୋଇ କହିଲା,—ସଂସ୍କୃତରେ ?

—ନାଁ ।

ତେବେ— ।

ମୁଁ କହିଲି—ଓଡ଼ିଆରେ ।

ଯେପରି ଗୋଟାଏ କିଛି ଅସାର କଥା କହି ପକାଇଲି ଓ ତାର ପରୀକ୍ଷା ପାଇଁ ମୂର୍ତ୍ତି ପାଖରେ ପ୍ରଣିପାତ କରି ସେ ଯେଉଁ ପବିତ୍ରତା ଟିକିକ ଅର୍ଜନ କରିଥିଲା ତାହା ବୋଧହୁଏ କଳୁଷିତ ହୋଇଗଲା ଭାବି ସେ ଚାଲିଗଲା ।

ନୋଟ ଖାତା ଓ ବିଭୁଜ କୋଣ ସଦୃଶ ନାକର ଚଶ୍ମା ମଧ୍ୟରେ ଅଳ୍ପ ବ୍ୟବଧାନ ରଖି ଯେଉଁ ତରୁଣୀଟି ମୋ ପାଖ ଦେଇ ଚାଲିଗଲା ତାର ଗୁଣୁ ଗୁଣୁ କଣ୍ଠ ସ୍ୱରରୁ ବୁଝିଲି ସେ ସେକ୍ସପିୟର

ନାଟକ ଅଥେଲୋର ଇୟାଗୋ ଚରିତ୍ରଟିକୁ ସୃଷ୍ଟି କରିବାରେ ଲାଗିଛି । ତାର ଆଖି ନୋଟ ଖାତା ଉପରେ; କିନ୍ତୁ ଚରଣ ଦୁଇଟି ଚାଲିଛି ଆଗକୁ । ପଞ୍ଚମୀ ଜହ୍ନର ଖଣ୍ଡିତ ଗୌର କପୋଳ ଉପରେ ତାର ଘନ ଘନ ଭ୍ରୂକୁଞ୍ଚନ ପରୀକ୍ଷା ପାଇଁ ଉଦ୍‌ବେଗର ସଙ୍କେତ ମାତ୍ର ।

ଭାବିଥିଲି ଏ ତରୁଣୀଟି ମୂର୍ତ୍ତି ଉଦ୍ଦେଶ୍ୟରେ ନମସ୍କାର କରି ନିଜର ଦୁଃଖ ଜଣାଇବ । ମାତ୍ର ତାହା ସେ କଲା ନାହିଁ । ଫୁଲହାର ମଝିରୁ ଗୋଟିଏ ଧଳା ଫୁଲ ବୃନ୍ତଚ୍ୟୁତ କରି ସେ ନିଜର ମଥା ବସନ ଆଡ଼ କରି କାଳିନ୍ଦୀ କଳା ଗଭାରେ ସେଇଟି ଆପି ଅନ୍ତର୍ହିତ ହୋଇଗଲା ।

ମେ ସଂସ୍କୃତ ପରୀକ୍ଷାର୍ଥୀ । ଆଜି ଏ—ଦୁହିଁଙ୍କର ବିପଦ ଏକା । ବିଶ୍ୱବିଦ୍ୟାଳୟର ସର୍ବଶେଷ ଉଚ୍ଚ ପରୀକ୍ଷା । ତାହାହେଲେ କି ସେକ୍ସପିୟରର ଅନୁରକ୍ତା ତରୁଣୀର ମୂର୍ତ୍ତି ପ୍ରତି ଅର୍ଚ୍ଚନା ଓ ସଂସ୍କୃତ ରସିକ ପରୀକ୍ଷାର୍ଥୀର ଗଦ୍‌ଗଦ୍ ସ୍ତୁତି ଭିତରେ ଏତେ ପାର୍ଥକ୍ୟ ?

ସମୟ ହୋଇ ଯାଇଛି । ପରୀକ୍ଷା ଗୃହ ଆଡ଼କୁ ଚାଲିଲି । କିନ୍ତୁ ବିଶ୍ୱ ବିଦ୍ୟାଳୟର ଦ୍ୱାର ପ୍ରାନ୍ତରେ ମୁଁ ଅଟକି ଯିବାକୁ ବାଧ୍ୟ ହେଲି ।

ବୁଢ଼ାଟିଏ । ପ୍ରସାରିତ ପାଣିରେ ତାର ଭିକ୍ଷା ଯେପରି ମୂର୍ତ୍ତି ହୋଇଛନ୍ତି । ତାର ଗୋଟିଏ ଆଖି ନଷ୍ଟ ପ୍ରାୟ । ଆଉ ଗୋଟିଏ ନଷ୍ଟ ହୋଇ ଯାଇଛି । ଯେଉଁ ଆଖିଟି ସାମାନ୍ୟ ବଞ୍ଚି ରହିଛି; ତାର ଦୃଷ୍ଟି ମନୁଷ୍ୟ ହୃଦୟର କେବଳ କରୁଣାର ସ୍ଥାନଟିକୁ ଯେପରି ଖୋଜି ବୁଲୁଛି ।

ମୁଁ ଟିକିଏ ଅଡ଼େଇ ହୋଇ ଛିଡ଼ା ହେଲି । ବୁଢ଼ା ଡାକୁଛି; ବାବୁ ପଇସାଟିଏ ଦିଅ—ଦିଅ ବାବୁ । ମନେ ମନେ ଭାବିଲି, ଏ ବୁଢ଼ା କଅଣ ମନସ୍ତାତ୍ତ୍ୱିକ ? ଠିକ୍ ବେଳେ, ଯଥାର୍ଥ ଘଡ଼ିସନ୍ଧି ସମୟରେ ସେ ହାତ ବଢ଼େଇ ଦେଇଛି । କିନ୍ତୁ ଅନାଇ ଦେଖିଲି ତାର ବିକୃତ ଅଞ୍ଜଳିରେ ପଇସାଟିଏ ବି ନାହିଁ ।

ଏକ, ଦୁଇ, ତିନି ହୋଇ ଦଳେ ଛାତ୍ର ଛାତ୍ରୀ ଚାଲିଗଲେ । ବୁଢ଼ୀର କାକୁତି କାହାକୁ ଯେପରି ସ୍ପର୍ଶ କଲା ନାହିଁ ।

ଘରୁ ପରୀକ୍ଷାକୁ ଅନୁକୂଳ କଲାବେଳେ ସ୍ତ୍ରୀ ଦଶଟି ପଇସା ପକେଇ ଦେଇଥିଲେ । ବୟସର ଆଧିକ୍ୟ ଯୋଗୁଁ ପରୀକ୍ଷା ଗୃହରେ ବୋଧହୁଏ ତୃଷା ପ୍ରବଳ ହୋଇପାରେ । ଏହି ଦୁଶ୍ଚିନ୍ତାରେ ଗୃହିଣୀ ବ୍ୟଥିତ ହୋଇ ଦଶ ଟୋଟି ପଇସା ଦାନ କରିଥିଲେ । ହେତୁ; ପଇଡ଼ ବା ଲେମୋନେଡ଼ ପାଣି ଦରକାର ହେଲେ ମିଳି ପାରିବ ।

ହାତ ମୋର ପକେଟ ଭିତରକୁ ଚାଲିଲେ । କିନ୍ତୁ ପର କ୍ଷଣରେ ଅର୍ଦ୍ଧାଙ୍ଗିନୀର ଏ ସ୍ନେହ ମିଶ୍ରିତ ଦାନକୁ ଅନ୍ଧ ବୁଢ଼ୀକୁ ବଢ଼େଇ ଦେଇ ବରବାଦ୍ କରିବାକୁ ଇଚ୍ଛା ହେଲାନି । ଧନତକ ଯେଉଁଠି ଥିଲା ସେଇଠି ପଡ଼ି ରହିଲା ।

ବିବେକ ବୋଲି ସତ; ମାତ୍ର ଯାହା ପାଇଁ ବିବେକ ଗଞ୍ଜଣା ଦିଏ, ତାହା ଏଡ଼ି ଦେବା ପାଇଁ ମଣିଷ ଆବିଷ୍କାର କରେ ଏପରି କୌଶଳ ଯାହା ମନକୁ ସାନ୍ତ୍ୱନା ଦିଏ । ପରୀକ୍ଷାର ଶେଷ ଦିନ ଅନ୍ଧକୁ ବିଶେଷ ଭାବରେ ଦାନ କରି ପାରିବି ଏଇ ସାନ୍ତ୍ୱନା ମନକୁ ଦେଇ ଆଜିର ଦାନ ତାହା ହାତକୁ ମୁଁ ଧରାଇ ଦେଇ ପାରିଲି ନାହିଁ ।

ପରୀକ୍ଷାର ଶେଷ ଦିନ । ଭଲ ହେଉ ବା ମନ୍ଦ ହେଉ, ଏଡ଼େ ପ୍ରକାଣ୍ଡ ବୋଝ ଯେ ମୁଣ୍ଡରୁ ଉତୁରି ପାରିଛି ଏହି ଭାବନାରେ ହୃଦୟ ସରସ ହୋଇଛି । ଏହି କେତେ ଦିନ ହେଲା ଗୃହିଣୀଙ୍କ ସହିତ ଛାଡ଼ବାଡ଼ ହୋଇ ଯାଇଛି । ଏକାନ୍ତରେ କଥା ପଦେ, ଏପରିକି ମଧୁର ଇଙ୍ଗିତ, ଚକ୍ଷୁର ଭାଷା ବନ୍ଦ ହୋଇ ଯାଇଛି । ତାହା ପରେ ତାଙ୍କ ସହିତ ଥିଏଟର, ବାଏସ୍କୋପ ଭ୍ରମଣ ଇତ୍ୟାଦି ଆକର୍ଷଣ ପୁଣି ତ ଅଛି ।

ଘରେ ଗୋଡ଼ ଦେଉ ନ ଦେଉ ସ୍ତ୍ରୀଙ୍କ ସସ୍ନେହ ଅଭିବାଦନ କରି କହିଲି, "ଜାଣ ସ୍ନେହ, ପରୀକ୍ଷା ଯେ କି ଦୁଶ୍ଚିନ୍ତା ତାହା ତୁମେ ବୁଝି ପାରିବ ନାହିଁ । ଏଇଠି ବସ, ବହୁତ କଥା ବାକି ପଡ଼ିଛି ।"

ସ୍ତ୍ରୀ ମତେ ବିସ୍ଫାରିତ ନେତ୍ରରେ ଚାହିଁଛନ୍ତି, ମୁଁ ଝଡ଼ ବେଗରେ ଦଉଡ଼ିଲି, ଯେଉଁଠି ସେ ଅନ୍ଧ ବୁଢ଼ା ପରୀକ୍ଷାର ଆଠ ଗୋଟି ଦିନ ହାତ ବଢ଼େଇ ଭିକ୍ଷା ମାଗୁଛି । ରାତି ପାହି ପ୍ରଥମେ ଚାହିଁଲି; ନିଜ ସ୍ତ୍ରୀ ସ୍ୱାର୍ଥ ଗୃହ ସଂସାର ସୁଖ ସ୍ୱାଚ୍ଛନ୍ଦ୍ୟ କେହିତ ବିସ୍ମୃତ ହେଲେ ନାହିଁ; କେବଳ ଭୁଲି ହୋଇଗଲା ସେହି ଅନ୍ଧ ବୁଢ଼ା ଓ ତାର ନିବେଦନ !

ବୁଢ଼ା ଯେଉଁଠି ଛିଡ଼ା ହୁଏ ସେଇଠି ଛିଡ଼ା ହୋଇଛି । ମୁଁ ଦେବି, ସେ ନେବ; ମୋର ଅଛି, ତାର ନାହିଁ; ସେ ମୋ ଠାରୁ କର ବଢ଼େଇ ନେବ—ଏ ଦାନରେ ଯେ ଆନନ୍ଦ ତାହା ଏହି ବୁଢ଼ା ଭଳି ଧୂଳିର ଜୀବଙ୍କ ପାଇଁ ଯେ କି ଅପମାନ, କି ନିଗ୍ରହ ତାହା ଦାନ ବତ୍ସଳ ମନୁଷ୍ୟ ବୁଝି ପାରେ ନାହିଁ । ଯେତେବେଳେ ଦେଖିଲି ଏତେ ସମୟ ଛିଡ଼ା ହେବା ପରେ ତାର ହାତ ଯେଉଁ ଖାଲି କି ସେହି ଖାଲି ସେତେବେଳେ ଆତୁରରେ ମୋର ପକେଟ ମୁଁ ଦରାଣ୍ଡି ପକାଇଲି । ହଠାତ୍ ମତେ ଜଣାଗଲେ, ମୋର ମୁହଁ ଉପରେ ଖଣ୍ଡେ କଳା କନା ଥରେ ନୁହେଁ ବାରମ୍ବାର ବୁଲି ଆସିଲା ।

ମୋ ପାଖରୁ ଲାଗି ଛିଡ଼ା ହୋଇଛି ଗୋଟିଏ ଯୁବତୀ । ନିଃସଙ୍ଗ ପରୀକ୍ଷାର୍ଥିନୀ ସେ, ଫେରୁଛି ସମସ୍ତଙ୍କ ପଛରେ । ମୋର ଅବସ୍ଥା ଦେଖି ସେ ସଙ୍କୁଚିତ ହୋଇ ମତେ ପଚାରିଲା—ମହାଶୟ, "କଅଣ କିଛି ହଜାଇ ଦେଲେ କି ? ଆପଣଙ୍କ ମୁହଁରୁ ଜଣା ଯାଉଛି ଯେପରି କିଛି ହଜାଇ ଦେଲେ ।

ସମ୍ଭ୍ରମରେ କହିଲି—ପଇସା ଦଶଟି ଟଙ୍କା ପ୍ରଥମ ଦିନରୁ ପକେଟରେ ଥିଲା । ଶେଷ ଦିନ ଏଇ ଅନ୍ଧ ବୁଢ଼ାକୁ ଦେବି ବୋଲି ଭାବି ରଖିଥିଲି । କିନ୍ତୁ ଏଖଣି ଦେଖୁଛି ସେତିକି ନାହିଁ ।

ତରୁଣୀ ନିଜ ଥଳିରୁ କୋଡ଼ିଏଟି ପଇସା ମୋ ହାତକୁ ବଢ଼େଇ ଦେଇ କହିଲେ—ନିଅନ୍ତୁ ମୋର ମନେ ହୁଏ ଆପଣ ଯଦି ବିବାହିତ ତେବେ ସ୍ତ୍ରୀ ଆପଣଙ୍କର ପଇସା ଦଶଟି ଆତ୍ମସାତ୍ କରିଛନ୍ତି । ଆପଣଙ୍କ ଦଶ ପଇସା ତା ସଙ୍ଗେ ମୋର ଦଶ ପଇସା ମିଶେଇ ବୁଢ଼ାକୁ ଦେଇ ଦିଅନ୍ତୁ । ଏ ଏକ ପ୍ରକାର ଦ୍ୱିତୀୟା ତତ୍ପୁରୁଷ ନୁହେଁ କି ?

ପ୍ରଗଲ୍‌ଭା ବାଳିକାର କଥା କହିବାର ଭଙ୍ଗୀରେ ମୁଗ୍ଧ ହେଲି । ବୋଧହୁଏ 'ସମାସ' ପ୍ରତି ଏହାର ବିଶେଷ ଦୃଷ୍ଟି ଥିବାରୁ ଦ୍ୱିତୀୟା ତତ୍ପୁରୁଷ ବାହାରି ପଡ଼ିଲା । ଯାହା ହେଉ କିଛି ଅଛୁ ପଚାରିଲି;—କିନ୍ତୁ ଆପଣ କିପରି ଜାଣିଲେ ସ୍ତ୍ରୀ ମୋର ସେତିକି ଅପହରଣ କରିଛନ୍ତି ?

ସେ ମୃଦୁ ହସି ଜଣାଇଲା—ମୋର ଅଭିଜ୍ଞତା ଅଛି ।

ହସିଲି ଏବଂ କହିଲି ତେବେ ଠିକଣାଟା ଦିଅନ୍ତୁ । ଋଣ ତ ପୁଣି ପରିଶୋଧ କରିବି ?

—ବାଃ, ହଠାତ୍ ଠିକଣାଟା ଦାବୀ କରି ବସିଲେ ? କାହିଁ, ଯେଉଁ ଅନ୍ଧଟି ଦିନ ଦିନ ଧରି ଏହି ଠାରେ ହାତ ପତାଏ, ଭିକ୍ଷା ରହେଁ ତାକୁ କି ଆଉ ଥରେ ସାହାଯ୍ୟ କରିବାକୁ ଇଚ୍ଛା ହେଉ ନାହିଁ ? ବରଂ ତାର ଠିକଣା ଆଗେ ଦରକାର ।

ମର୍ମ ସ୍ଥଳରେ ଆଘାତ ପାଇଲି । ମୋର ଦୁର୍ବଳତା ଏ ନାରୀ ଯେ ଧରି ପାରିଛି ଏଥିରେ ବିକ୍ଷୋଭ ପ୍ରକାଶ କରିବା ଦୂରେ ଥାଉ ଖୁସି ହେଲି । ପାଞ୍ଚ ଅଣା ପଇସା ଅନ୍ଧକୁ ବଢ଼େଇ ଦେଇ ହାତ ଯୋଡ଼ି ତରୁଣୀକୁ ନମସ୍କାର କରି ଫେରି ପଡ଼ିଲି ।

ଘରେ ପହଞ୍ଚି ପକେଟରୁ ପଇସା ଅନ୍ତର୍ଦ୍ଧାନ ହୋଇ ଯିବାରି କୈଫିୟତ୍ ସ୍ତ୍ରୀଙ୍କ ଠାରୁ ଦାବୀ କଲି ।

ସେ କହିଲେ ପଇସାତକ ମୁଁ ଖର୍ଚ୍ଚ ନ କରି ପାରିବାରୁ ସେ ଘର ଖର୍ଚ୍ଚରେ ଲଗେଇ ଦେଇଛନ୍ତି ।

ତାଙ୍କୁ କୁଣ୍ଢେଇ କହିଲି—ତାଙ୍କ କଥା ତେବେ ଠିକ୍ ।

—କାହା କଥା ? ଗୃହିଣୀ ତମ ତମ ହୋଇ ଉତ୍ତର ଅପେକ୍ଷାରେ ଉତ୍‌କର୍ଣ୍ଣ ହୋଇ ରହିଲେ ।

କି ଉତ୍ତର ବା ମୁଁ ଦେବି ?



[ 'ଧାଙ୍ଗ' ୧ମ ବର୍ଷ, ୪ର୍ଥ ସଂଖ୍ୟା, ଆଶ୍ୱିନ ୧୩୫୩, ସେପ୍‌ଟେମ୍ବର ୧୯୪୬ ]

ସୁରେନ୍ଦ୍ର ମହାନ୍ତି

# ମଧୁମଞ୍ଜାର ରାତ୍ରି

ଚରୈବେତ, ଚରୈବେତ ··· ଚାଲ, ଚାଲ, ଆଗେଇ ଚାଲ ।

ଉପକ ଚାଲିଛି । ଗତ ତିରିଶ ବର୍ଷ ଧରି ଚାଲିଛି । ରାଜଗୃହରୁ ନାଳନ୍ଦା, ନାଳନ୍ଦାରୁ ଉରୁବିଲ୍ୱ, ଉରୁବିଲ୍ୱରୁ ପାଟଳୀପୁତ୍ର, ପାଟଳୀପୁତ୍ରରୁ ବୈଶାଳୀ, ବୈଶାଳୀରୁ ବିଦେହ, ବିଦେହରୁ ବେଶଳୀ, ବେଶଳୀରୁ କାଶୀ, କାଶୀରୁ ସାକେତ, ସାକେତରୁ ଯିବ ଚମ୍ପା···ତା’ ପରେ ? କିଏ ଜାଣେ ? ଅନନ୍ତ, ଅଫୁରନ୍ତ ଯାତ୍ରା ପଥ । ସେ ଯାତ୍ରାର ଶେଷ ନାହିଁ । କାହିଁକି ବା ନେଲା ସେ ଏ ବିରାମହୀନ ଯାତ୍ରାର ଦୀକ୍ଷା ?

ବେତ୍ରବତୀର ସୁଗଭୀର ଜଳରେ ସୁନୀଳ ପ୍ରଶାନ୍ତ । ଦଳ ଦଳ ସାରସ ଦମ୍ପତି, ନୀଳ ଶୀତଳ ଜଳରେ, ଅଳସ ଆନନ୍ଦରେ ଦେହ ଢାଳି ଦେଇଛନ୍ତି । ଉପକ ବେତ୍ରବତୀର ଜଳରେ ସନ୍ତରଣ କରିବାର ଲୋଭ ସମ୍ବରଣ କରି ପାରିଲା ନାହିଁ ।

ବେତ୍ରବତୀର ଜଳଧାର ପରି ମଣିଷର ଜୀବନ…ଏକ ଅନିଶ୍ଚିତ କନ୍ଦରରୁ ବାହାରି, ଅନ୍ୟ ଏକ ଅନିଶ୍ଚିତ ପରିଣତ ଆଡ଼େ ଗତି କରି ଚାଲିଛି । ଏହି ନିଃସଙ୍ଗ ପଥ ଓ ବିରାମହୀନ ଯାତ୍ରାହିଁ ଏକ ମାତ୍ର ସତ୍ୟ । ଆଉ ସବୁ ମିଥ୍ୟା, ସବୁ ଦୁଃଖ ।

ଅପରାହ୍ଣର ଛାୟା ବେତ୍ରବତୀର ତଟ ଭୂମି ଉପରେ ଧୀରେ ଧୀରେ ବୁଲି ଆସିଲାଣି । ଦଳ ଦଳ ବଧୂ ଓ ବାଳିକା ଲୀଳାୟିତ କଟୀରେ ଜଳ କୁମ୍ଭ ଧରି ବେତ୍ରବତୀରୁ ଜଳ ଆହରଣ ପାଇଁ ଆସୁଛନ୍ତି । କୌତୁକିନୀମାନଙ୍କର କୌତୁକ ଓ ପରିହାସ ପ୍ରମୋଦରେ ନିର୍ଜନ, ରୁକ୍ଷ ତଟ ଦେଶ ପ୍ରାଣବନ୍ତ ହୋଇ ଉଠିଲା ।

+ + + +

ନାରୀର ଦେହ, ଚିରକାଳ ଉପଗୁପ୍ତଙ୍କୁ ଆକୃଷ୍ଟ କରିଛି…ଦୁର୍ବାର ଆକର୍ଷଣରେ । ସେ ଥର ବିଦେହରେ………

ଚାତୁର୍ମାସ୍ୟା ପାଇଁ, ଜଣେ ଶ୍ରେଷ୍ଠୀ, ସାଧୁ, ସମ୍ମତ, ତାର୍ଥିକର, ଚିରପରିଚିତ ବେଲଥୀ ପୁତ୍ର ଓ ତାଙ୍କର ଶିଷ୍ୟମାନଙ୍କୁ ବିଦେହର ଉପକଣ୍ଠରେ ଏକ ସଂଘାରାମ ସମର୍ପଣ କରିଥିଲେ । ବେଲଥୀ ପୁତ୍ର, ସେଠାରେ ବହୁ ଶିଷ୍ୟଙ୍କ ସହିତ ରହି ଚାତୁର୍ମାସ୍ୟା ପାଳନ କରୁଥିଲେ ।

ଦିନେ ସେହି ସଂଘାରାମକୁ ଆସିଥିଲା ବଳ୍ଲୀକନ୍ୟା, ଗଣିକା ମଧୂମତ୍ତା ବେଲଥୀ ପୁତ୍ରଙ୍କ ପାଇଁ ପୂଜାର୍ଘ୍ୟ ଘେନି, ସେତେବେଳେ ଉପଗୁପ୍ତ, ସଂଘାରାମର ଉଦ୍ୟାନରେ ତୃଣଶଯ୍ୟା ଉପରେ ଶୋଇ ରହି "ଶୁଦ୍ଧ ପାଣସ୍ତୃ" ବ୍ରତ ପାଳନ କରୁଥିଲା । ଦୀର୍ଘ ଦୁଇମାସ ଏହିପରି ଦୁର୍ବାଶଯ୍ୟା ଉପରେ, ପୂର୍ଣ୍ଣ ଉପବାସରେ ପଡ଼ି ରହି ଆଜୀବକମାନଙ୍କୁ ସାଧନା କରିବାକୁ ପଡ଼େ । ମଧୂମତ୍ତା ଫେରିଲା ବେଳେ, ତୃଣଶଯ୍ୟା ଉପରେ ଶାୟିତ, ଉଲଙ୍ଗ ପ୍ରାୟ, ତରୁଣ ଉପଗୁପ୍ତଙ୍କୁ ଦେଖି, ସଙ୍କୋଚରେ ଦଣ୍ଡକ ପାଇଁ ମୁହଁ ତଳକୁ ନୁଆଁଇ ରହିଗଲା । ଉପଗୁପ୍ତ

ପାଁଖରେ, ଦୁର୍ବାଶଯ୍ୟା ଉପରେ, ସଦ୍ୟସ୍ନାତା ମଧୁମନ୍ତ୍ରର ବିଶ୍ଳଥ କଙ୍କଣରୁ କେତୋଟି ଅଶୋକ କଳି ତଳେ ଝରି ପଡ଼ିଲା । ଉପକ ମୁଗ୍ଧ ଦୃଷ୍ଟିରେ ମଧୁମନ୍ତ୍ରୀ ଆଡ଼େ ଚାହିଁ ପଚାରିଲା—"ତୁମକୁ କେଉଁ ନାମରେ ସମ୍ବୋଧନ କରିବି ଭଦ୍ରେ ?"

ମଧୁମନ୍ତ୍ରୀ କହିଲା—"ବଙ୍କାକନ୍ୟା ମଧୁମନ୍ତ୍ରୀ ।"

ଉପକ କ୍ଷୁଧିତ କଣ୍ଠରେ ପଚାରିଲା—"ଅରୁଣଙ୍କ ପାଇଁ କି ପୂଜାର୍ଘ୍ୟ ଆଣିଥିଲ ମଧୁମନ୍ତ୍ରୀ ?"

ମଧୁମନ୍ତ୍ରୀ କହିଲା—"ପାୟସ ।"

ମଧୁମନ୍ତ୍ରୀର ବୀଣାନିନ୍ଦୀ କଣ୍ଠରେ ପାୟସ ଉଚ୍ଚାରଣ ଶୁଣି, ଉପକର ଜିହ୍ୱା ଲାଳସିକ୍ତ ହୋଇଗଲା ।

ଉପକ କହିଲା—"ଭଦ୍ରେ, ମୁଁ ବଡ଼ କ୍ଷୁଧାର୍ତ୍ତ । ଗତ ଏକ ମାସରୁ ଊର୍ଦ୍ଧ୍ୱ କାଳ ଧରି, ଏହି ଦୁର୍ବାଶଯ୍ୟା ଉପରେ ଉପବାସରେ ପଡ଼ି, ମୁଁ ଶୁଦ୍ଧ ପାଣସ୍ତୁ ବ୍ରତ ପାଳନ କରୁଅଛି ।"

ମଧୁମନ୍ତ୍ରୀ ଚପଳ କଣ୍ଠରେ ହସି ପଚାରିଲା—"ଆଜୀବକର ପୁଣି କ୍ଷୁଧା କ'ଣ ଶମଣ ? ଶୁଦ୍ଧପାଣସ୍ତୁ ବ୍ରତ କରି ଅନ୍ନ ଚିନ୍ତା କଲେ ନିର୍ବାଣ ହେବ ନାହିଁ ଯେ !"

ଉପକ କହିଲା—"ନିର୍ବାଣ ପ୍ରାପ୍ତିର ପଥ ଯଦି ଅନ୍ନ ଭୋଜନରେ ରୁଦ୍ଧ ହୋଇଯିବ, ତାହାହେଲେ ସେ ନିର୍ବାଣ ଅନ୍ନ କଣିକା ଠାରୁ ସୁଦ୍ଧା ସୁଲଭ୍ୟ । ଅର୍ହତ ମଙ୍ଖଲୀ ଗୋଶାଳ ପରା କହିଥିଲେ, ଆଜୀବକ ବ୍ରତ, ଉପବାସ, ଗଙ୍ଗାସ୍ନାନ ଓ ସୁକର୍ମ କଲେ ପୁଣ୍ୟ ପ୍ରାପ୍ତି ହୁଏ ନାହିଁ କି ବ୍ରତ ଉପବାସ ନ କରି ଧର୍ମ ଆଚରଣ ନ କଲେ ପାପର କାଳିମା ସୁଦ୍ଧା ଲାଗେ ନାହିଁ ।"

ମଧୁମନ୍ତ୍ରୀ ସ୍ମିତ ହସି କହିଲା—"ଶୁଦ୍ଧ ପାଣସ୍ତୁ ବ୍ରତ ବେଳେ ଲୁଚିକରି ଖାଇବା ପାଇଁ ମଙ୍ଖଲୀ ଗୋଶାଳ ଯଦି କହିଥିବେ, ଅଜିତ

କେଶ କମ୍ବଳୀ ଶୁଦ୍ଧ ପାଣ୍ଡ୍ୟ ବେଳେ ଜଳ ସୁଦ୍ଧା ସ୍ପର୍ଶ ନ କରିବା ପାଇଁ ନାସ୍ତ୍ୟ କେଉଁଠି ସୂତ୍ର ବାନ୍ଧିଥିବେ ! ସଞ୍ଜୟ ବେଲଥୀ ପୁତ୍ର କେଜାଣି ତାହାର ମୀମାଂସା ଜାଣିଥିବେ ! ତାଙ୍କୁ ପଚାରିବ ?"

ମଧୁମନ୍ତ୍ରାର ଦୁଇ ବିମ୍ବୋଷ୍ଠ କୁଟିଳ ଭ୍ରୂକୁଟିରେ କୁଞ୍ଚିତ ହୋଇଗଲା । ଉପକ, ମଧୁମନ୍ତ୍ରା ଆଡ଼େ ମୁଗ୍ଧ ଦୃଷ୍ଟିରେ ଚାହିଁ ରହୁଥିଲା, କଳା ଭୃଙ୍ଗ ପରି ସେ ମଧୁମନ୍ତ୍ରାର ବଦନ କମଳକୁ ଉଡ଼ି ଯାଇ ପାରନ୍ତା କି !

ମଧୁମନ୍ତ୍ରା ପଚାରିଲା - "କି କହିଲ ନାହିଁ ଯେ ! ମୋ ଆଡ଼କୁ ଚାହିଁ କ'ଣ ଏତେ ଦେଖୁଛ !"

ମଧୁମନ୍ତ୍ରାର ସ୍ମିତ ହାସ୍ୟ ଉପକର ମର୍ମ ଦେଶରେ ମୃଗୟୁର ଶର ପରି ବିନ୍ଧିଗଲା ।

ମଧୁମନ୍ତ୍ରା ଚାଲି ଯାଉଥିଲା, ପଛରୁ ଉପକ ଡାକିଲା—'ଭଦ୍ରେ' !

ମଧୁମନ୍ତ୍ରା, ପଛକୁ ଫେରି ଚାହିଁ ଉଷ୍ମାଚ୍ଛଳିତ କଣ୍ଠରେ ପଚାରିଲା— "ପୁଣି କ'ଣ କହୁଛ ଶ୍ରମଣ ?"

ଉପକ କହିଲା — "ଶ୍ରମଣକୁ ଭିକ୍ଷା ନ ଦେଇ ଚାଲିଯିବ ମଧୁମନ୍ତ୍ରା ? ପୁଣ୍ୟ ସଞ୍ଚୟ ପାଇଁ କାମନା ନାହିଁ ତମର ?"

ମଧୁମନ୍ତ୍ରା ସ୍ମିତ ହସି ପଚାରିଲା— "କି ଭିକ୍ଷା ନେବ ଶ୍ରମଣ ?"

ଉପକ ଭୀରୁ କଣ୍ଠରେ କହିଲା—"ତୁମ ପାଦ ତଳେ ମୋତେ ଦୂର୍ବା କରିବ ସୁନ୍ଦରୀ ?"

ମଧୁମନ୍ତ୍ରା ସଲଜ୍ଜ କଣ୍ଠରେ କହିଲା—"ତୁମର ଏ ବିପରୀତ ରୀତି ମୋତେ ଜଣା ନ ଥିଲା ଶ୍ରମଣ ।"

ମଧୁମନ୍ତ୍ରା ତା' ପରେ ନିତମ୍ବ ଦୋଳାଇ ପୁଣି ଥରେ ଉପକ ଆଡ଼େ ବଙ୍କ ଦୃଷ୍ଟିରେ ଚାହିଁ କୌତୁକରେ ଦନ୍ତ ପୀଡ଼ିତ ଜିହ୍ୱାଗ୍ର ଦେଖାଇ ଲୀଳାୟିତ ପାଦରେ ଚାଲିଗଲା ।

ଉପକର ମନେ ହେଉଥିଲା ଶୁଦ୍ଧ ପାଦସ୍ପର୍ଶରେ ଏ ନିର୍ବୋଧ ଅଞ୍ଜନପ୍ରସୂ ସ୍ଫୁଲିଙ୍ଗ, ଆଷାଢ଼ର ମେଘାଚ୍ଛନ୍ନା ସନ୍ଧ୍ୟାର ଦେହରେ ବଳାକା ପରି, ନୀଳ ଦୁକୂଳାବୃତା ମଧୁମଲ୍ଲାର ଦେହରେ ବୁଲିଯିବା ପାଇଁ ।

ସେଦିନ ରାତି·····

ସଂଘାରାମରେ ସମସ୍ତେ ପ୍ରାୟ ନିଦ୍ରା ଚେତନ । ଉପକ ଉଦ୍ୟାନର ଗୋଟିଏ ଆମ୍ର ବୃକ୍ଷ କୋଠର ପାଖରେ ବସି ହିଂସ୍ର ପଶୁ ପରି, ବେଲଥୀ ସ୍ଥବିରଙ୍କ ଉଦ୍ଦେଶ୍ୟରେ ନିବେଦିତ ପାୟସ ଓ ମିଷ୍ଟାନ୍ନ ଗଳାଧଃକରଣ କରୁଥିଲା । ସଂଘାରାମରେ ଅଧିକାଂଶ ଶ୍ରମଣ ଏଇଅହିଁ ନିତ କରିଥାନ୍ତି । ମୋକ୍ଷ ଓ ନିର୍ବାଣର ପାଇଁ ଉପବାସ ରହିବାର କୌଣସି ·ଅର୍ଥ ନାହିଁ, ଗୌତମ ଯେ ନିର୍ବାଣର ସନ୍ଧାନ ପାଇଛନ୍ତି ବୋଲି ଏତେ ପ୍ରଚାର କରି ବୁଲୁଛନ୍ତି, · ସେ ସୁଦ୍ଧା ତ ବୃଥା ଉପବାସ ରହି ରହି, ଶେଷକୁ ସରମା ହାତରୁ ପାୟସାନ୍ନ ଭୁଞ୍ଜିଥିଲେ । ଏବେ ବଡ଼ାଇ କରି ବୁଲୁଛନ୍ତି । ସେଇଥି ପାଇଁ ତ ଉପକ ତାଙ୍କୁ ମୁହେଁ ମୁହେଁ ମୁଣ୍ଡିତଗୃହପତିକ ( ଲୁଣ୍ଠିତ ମସ୍ତକ ଗୃହସ୍ଥ ବା ଛଦ୍ମବେଶୀ ଶ୍ରମଣ ) ବୋଲି ସେଦିନ ଉରୁବିଲ୍ୱ ପଥରେ କହି ଦେଇଥିଲା । ସବୁ ଯଦି ମାୟା, ସବୁ ଯଦି ଅଳୀକ, ତା ହେଲେ ନିର୍ବାଣ ଯେ ସତ୍ୟ ତାହାର ପ୍ରମାଣ କଣ ?”

ଉପକର ଦେହର କ୍ଷୁଧା କଥଞ୍ଚିତ ଶାନ୍ତ ହେବା ପରେ, ମଧୁମଲ୍ଲୀକୁ କେନ୍ଦ୍ର କରି ମନର କ୍ଷୁଧା ପ୍ରବଳ ହୋଇ ଉଠିଲା । ଦନ୍ତ ପୀଡ଼ିତ ଜିହ୍ୱାଗ୍ର ଦେଖାଇ, ମଧୁମଲ୍ଲୀର କୌତୁକ ପରିହାସ ଉପକକୁ ଅନବସ୍ଥିତ କରି ଦେଲା ।

ନିଶାର୍ଦ୍ଧର ସୁପ୍ତ ଆକାଶରେ ଅଗଣିତ ତାରା···ଜୀବନରେ ବହୁ ଅତୃପ୍ତ କାମନା ପରି । ତାର ଜ୍ୱାଳାମୟ ଦୀପ୍ତି ଉପକକୁ ଯେପରି ତିଳେ ତିଳେ ଦଗ୍ଧ କରି ଦେଲା ।

··· ··· ···

ବୃଷ୍ଟିମାସିଆ ଶେଷ ହେଲା । ମେଘମୁକ୍ତ ଆକାଶରେ ଶରତ୍‌ରି ଖଣ୍ଡ ଖଣ୍ଡ ଲଘୁ ମେଘ ଭାସି ବୁଲୁଛନ୍ତି, ନିଃସମ୍ବଳ, ନିରୁଦ୍ଦିଷ୍ଟ, ଅନବସ୍ଥିତ ଶ୍ରମଣମାନଙ୍କ ପରି । ଏଥର ସଂଘାରାମ ଉଠିବ । ଶ୍ରମଣମାନେ ନିଜ ନିଜ ପଥ ଧରି ପୁଣି ପ୍ରବ୍ରଜ୍ୟା ଆରମ୍ଭ କରିବେ । ଉପକ ମଧ୍ୟ ଚାଲିଯିବ । କିନ୍ତୁ ବିଦେହ ଛାଡ଼ିବା ପୂର୍ବରୁ ଥରେ ମଧୁମନ୍ତ୍ରୀର ସାକ୍ଷାତକାର୍ଯ୍ୟ ପାଇଁ ଉପକର ଚିତ୍ତ ଆକୁଳ ହୋଇ ଉଠିଲା ।

... ଶରତର ଗୋଟିଏ ସ୍ନିଗ୍ଧ, କୋମଳ ଗୋଧୂଳି । ଉପକ ଭିକ୍ଷା ଶେଷରେ ବିଦେହର ରାଜ ପଥରେ ଫେରୁଥିଲା ସଂଘାରାମ ଆଡ଼େ । ସେତେବେଳେ ମଧୁମନ୍ତ୍ରୀ ନିଜ ଭବନ-ଶିଖରରେ କିଙ୍କରୀ-ମାନଙ୍କର ଗହଣରେ ପାଦ ଚାରଣା କରି ରାଜ ପଥରେ ବେଳେ ବେଳେ ରଥାରୂଢ଼ ହୋଇ ଯାଉଥିବା ଶ୍ରେଷ୍ଠୀ ଓ ରାଜକୁମାରମାନଙ୍କୁ ନାନା ଅଙ୍ଗ ଭଙ୍ଗୀ ଦ୍ୱାରା ପ୍ରଲୁବ୍ଧ କରୁଥିଲା । ଉପକକୁ ରାଜପଥରେ ଦେଖି, ମଧୁମନ୍ତ୍ରୀ କବରୀରୁ ଗୋଟିଏ ଦଳିଆ ଚମ୍ପା କାଢ଼ି ଉପକର କମଣ୍ଡଳୁ ଭିତରକୁ ଫିଙ୍ଗି ଦେଲା ।

ଭବନ-ଶିଖରରେ ଭୁବନ-ମୋହିନୀ ମଧୁମନ୍ତ୍ରୀକୁ ଦେଖି, ଉପକର ସାରା ଦେହ ଏକ ଉତ୍ତେଜନାରେ ଦୀପର ଶିଖା ପରି ପ୍ରକମ୍ପିତ ହୋଇଗଲା । କିନ୍ତୁ ପର ମୁହୂର୍ତ୍ତରେ ନିଜର ରୁକ୍ଷ ବେଶବାସ, ମଳିନ କୌପୀନ, ଛିନ୍ନ ଚୀବର ଓ ଅର୍ଦ୍ଧ ଦଗ୍ଧ ବିକଳ ହସ୍ତରେ ଶୂନ୍ୟ କମଣ୍ଡଳୁ ଦେଖି ମନ ତାର ସଙ୍କୁଚିତ ହୋଇଗଲା । ବହୁ... ବହୁବର୍ଷ ତଳେ, ଆଜୀବକ ସଙ୍ଘରେ ପ୍ରଥମ ଦୀକ୍ଷା ଗ୍ରହଣ ବେଳେ, ରୂପ, ସ୍ପର୍ଶ ଓ ଅନୁଭୂତି ଜୟ କରିବା ପାଇଁ, ଆଜୀବକ ଦୀକ୍ଷା ଗ୍ରହଣ ବିଧି ଅନୁସାରେ, ସେ ତପ୍ତ ଲୌହଖଣ୍ଡ ଦୁଇ ହାତରେ ଅଞ୍ଜଳିବଦ୍ଧ କରି ଧରିଥିଲା । ସେହି ଦିନୁ ଦୁଇ ହାତରେ ଅଙ୍ଗୁଳି ଗୁଡ଼ିକ ଦଗ୍ଧ ହୋଇ, କେବଳ ଅର୍ଦ୍ଧ ଦଗ୍ଧ, କୁଞ୍ଚିତ ଚର୍ମ ତଳେ ଅସ୍ଥି ଖଣ୍ଡମାନ ଅବଶିଷ୍ଟ ରହିଅଛି ।

ଉପକ ଇତଃସ୍ତତଃ ହେଉଥିଲେ; ଏତିକିବେଳେ ମଧୁମନ୍ତ୍ରୀର ପରିଚାରିକା କାମଦା ବାହାରକୁ ଆସି କହିଲା·····"ଅଭ୍ୟନ୍ତରକୁ ପଦାର୍ପଣ କରନ୍ତୁ ଶ୍ରମଣ । ସଖୀ ଅଗ୍ରସଙ୍କ କାମନା କରି ଅଛନ୍ତି ।" କାମଦାର ପରିହାସ-ଚପଳ ଆମନ୍ତ୍ରଣ ଉପକଙ୍କୁ ଅଧିକର କାମ ଦଗ୍ଧ କରିଦେଲା ।

ଉପକ ପଚାରିଲେ—"ତୁମକୁ କେଉଁ ନାମରେ ସମ୍ବୋଧନ କରିବି ଭଦ୍ରେ ?"

କାମଦା ସ୍ମିତ ହସି କହିଲା—"କାମଦା ।"

ଉପକ ଶୁଷ୍କ ଦୁଇ ଓଷ୍ଠ ଉପରେ କ୍ଷୁଧିତ ପଶୁ ପରି ଜିହ୍ୱାଗ୍ର ବୁଲାଇ ଅସ୍ପଷ୍ଟ ସ୍ୱରରେ ମନେ ମନେ ଉଚ୍ଚାରଣ କଲେ··· "କାମଦା···କାମଦା ।"

ଅପ୍ରଶସ୍ତ ଅଳିନ୍ଦ ପଥରେ ଗଲାବେଳେ ଉପକର ମନ ହେଉଥିଲା ଥରେ କାମଦାଙ୍କୁ ନିବିଡ଼ ବାହୁ ପାଶରେ ଆଲିଙ୍ଗନ କରିବା ପାଇଁ । ମାତ୍ର ଅଳିନ୍ଦ ପଥର ଶେଷରେ ସ୍ମିତହାସିନୀ ମଧୁମନ୍ତ୍ରୀ, କେଳି ମନ୍ଦିର ଦ୍ୱାରରେ ଯେପରି ଉପକର ପଥ ଚାହିଁ ଠିଆ ହୋଇଥିଲା । କୁସୁମ, ଅଗୁରୁ ଓ ସୁବାସ ସହିତ ସିତ ଚନ୍ଦନ ଲେପିତ ନାରୀ ଦେହର ଲୋଭନୀୟ ଗନ୍ଧ, କ୍ଷୁଧିତ ଉପକର ଦୁଇ ଆଖିରେ ଏକ ଅନିର୍ବଚନୀୟ କଳ୍ପଲୋକ ସୃଷ୍ଟି କରିଥିଲା ।

ମଧୁମନ୍ତ୍ରୀ କହିଲା—"ଭିତରକୁ ଆସ ଶ୍ରମଣ ।"

କୁସୁମ ବିଚର୍ଚ୍ଚିତ, ଅଗୁରୁ ସୁବାସିତ, ଦୀପାଲୋକିତ, ବୀଣା ଓ ବିପଞ୍ଚୀ ନନ୍ଦିତ କେଳି ମନ୍ଦିର, ମଧୁମନ୍ତ୍ରୀ ଶୁଭ୍ର କମଳର ଶଯ୍ୟା ଉପରେ, ଦେହ ଢାଳି ଦେଇ, କିଂ କର୍ତ୍ତବ୍ୟ ବିମୂଢ଼ ଉପକ ଆଡ଼େ ଚାହିଁ ସ୍ମିତ ହସି କହିଲା—"ଏଠାରେ ଉପବେଶନ କରନ୍ତୁ ଶ୍ରମଣ ।"

ଉପକ ଚାହିଁ ଦେଖୁଥିଲ …… ନବଶିରୀଷମାଲ୍ୟଭୂଷିତା, ନବମଣିବନନିର୍ମିତ କାଞ୍ଚୀ, କେୟୂର, କଙ୍କଣ ଓ ନୂପୁରଭୂଷିତା, ସୁଧାରସ ତରଙ୍ଗିତନୟନା, ମଦାବେଶବିହ୍ୱଳା ଏହି ରତି ଆକାଂକ୍ଷିଣୀ ନାରୀ, ନାରୀ ନୁହେଁ; ବିଶ୍ୱର ପୁଞ୍ଜୀଭୂତ କାମନା ଯେପରି ଅଗଣିତ ଜୀନ, ତୀର୍ଥଙ୍କରଙ୍କ ନିର୍ବାଣ ସାଧନାକୁ ଉପହାସ କରି କମଳଦଳାବୃତ ଶଯ୍ୟାରେ ଅଳସ ଅପସ୍ମୃତା ପରି ଦେହ ଢ଼ାଳି ଶୋଇଛି । ମଧୁମନ୍ତ୍ରୀ କାମଦାକୁ ଡାକି କହିଲ; "ଅଗୋ କାମଦା ଶ୍ରମଣଙ୍କୁ ଆସବ ନିବେଦନ କର ।"

କାମଦା ସ୍ଫଟିକର ଦୁଇଟି ପାନ ପାତ୍ରରେ ଆସବ ଆଣି ଉପକ ଓ ମଧୁମନ୍ତ୍ରୀଙ୍କ ମଝିରେ ରଖି ଦେଲି । ଉପକ କମ୍ପିତ ହସ୍ତରେ ଗୋଟିଏ ପାତ୍ର ଉଠାଇ ମୁହୂର୍ତ୍ତିକ ମଧ୍ୟରେ ନିଃଶେଷ କରି ଦେଇଥିଲ; ମଧୁମନ୍ତ୍ରୀ କହିଲ—"ଭୟ ନାହିଁ ଶ୍ରମଣ ଏ ସଞ୍ଜୟ ବେଲଥୀ ପୁତ୍ରଙ୍କ ସଂଘାରାମ ନୁହେଁ ବା ନିଗାର୍ଣ୍ଣ୍ଣର ଅପଭ୍ରଷ୍ଟ ପାୟସାନ୍ନ ନୁହେଁ । ଧୀରେ ଧୀରେ ମୋ ଆଡ଼େ ଚାହିଁ, ସ୍ମିତ ହସି ପାନ କରନ୍ତୁ ।" ମଧୁମନ୍ତ୍ରୀ ତା ପରେ ନିଜେ ଗୋଟିଏ ପାତ୍ର ଦୁଇ ଓଠ ପାଖରେ ଟେକି ଧରି ଧୀରେ ଧୀରେ ଆସବ ପାନ କଲା । ଏହା ପୂର୍ବରୁ ଉପକ, କେତେ-ବାର ଅବଶ୍ୟ ଲୁଚାଇ ଆସବ ପାନ କରିଛି । ଆସବ ପାନ କରିବା ଆଜୀବକମାନଙ୍କ ପକ୍ଷରେ ଏକାନ୍ତ ନିଷିଦ୍ଧ ନୁହେଁ । ମାତ୍ର ଆଜି ମଧୁମନ୍ତ୍ରୀର ସ୍ଫୁରିତ ବିମ୍ବାଧର ଓ ନୀଳୋତ୍ପଳନିନ୍ଦୀ କୁରଙ୍ଗୀ-ନୟନ ଆଡ଼େ ଚାହିଁ ଆସବ ପାନ କଲାବେଳେ ଏକ ଅପୂର୍ବ ତୃପ୍ତିରେ ଉପକକୁ ଅବସନ୍ନ ପରି ଲାଗିଲା ।

ନୀଳ ଚୀନାଂଶୁକର ଅବଗୁଣ୍ଠନ ତଳେ ମଧୁମନ୍ତ୍ରୀର ଏ କି ରୂପଶ୍ରୀ … ଜ୍ୟୋତ୍ସ୍ନାଚ୍ଛିତ ଆକାଶ ତଳେ ଭୁବନମୋହିନୀ ଚାନ୍ଦି ପରି !

ମଧୁମନ୍ତ୍ରୀ ପଚାରିଲା—"ଏ ଜନ୍ମ ପରେ ଆଉ ପୁନର୍ଜନ୍ମ ଅଛି ଶମଣ ?"

ଉପକ କହିଲା—"ଏଠି ଜନ୍ମ ପୁନର୍ଜନ୍ମର ବିଚାର କାହିଁକି ମଧୁମନ୍ତ୍ରୀ ?"

ମଧୁମନ୍ତ୍ରୀ ଗୋଟିଏ କମଳ କଳିକା କଅଁଳ ପୀଡ଼ିତ ଦୁଇ ବକ୍ଷୋଜ ଉପରେ ଧୀରେ ଧୀରେ ନଚାଇ ପଚାରିଲା—"ତା ହେଲେ ଏ ଜନ୍ମ ପରେ ଆଉ ପୁନର୍ଜନ୍ମ ନାହିଁ ଶମଣ ?"

ଉପକ କହିଲା "ମୁଁ ଜାଣେ ନା, କେହି ଜାଣେ ନାହିଁ । ପୁନର୍ଜନ୍ମ ଥିବା ମୁଁ ଜାଣେ ନାହିଁ, ନ ଥିବା ମଧ୍ୟ ଜାଣେ ନାହିଁ । ମୁଁ ଜାଣେ ଜନ୍ମ ମିଥ୍ୟା, ପୁନର୍ଜନ୍ମ କଳ୍ପନା, ସତ୍ୟ କେବଳ ଧାବମାନ ଏହି ମୁହୂର୍ତ୍ତ, ଆଉ ତୁମେ ! ତୁମ ଠାରେ ମୋର ଭିକ୍ଷା କ'ଣ କାଳେ କାଳେ ଅତୃପ୍ତ ରହିଯିବ ମଧୁମନ୍ତ୍ରୀ ?"

ମଧୁମନ୍ତ୍ରୀ ସ୍ମିତ ହସି, ଉପକଙ୍କୁ ଆହୁରି ପ୍ରଲୁବ୍ଧ କରି ପଚାରିଲା—"ତୁମର କି ଭିକ୍ଷା ଶମଣ ?"

ଉପକ କହିଲା—"ଥରେ ଦୁଇ ହାତରେ ତୁମକୁ ଅନୁଭବ କରିବାକୁ ଦେବ ମୋତେ ସୁନ୍ଦରୀ ?"

ମଧୁମନ୍ତ୍ରୀ କହିଲା, "ଶମଣ, ବିଦେହ ରାଜକୋଷର ଦୈନିକ ଆୟ, ମୋର ଏକ ରାତିର ଆୟର ଅର୍ଦ୍ଧାଂଶରୁ ସୁଦ୍ଧା କମ । ମୋର ପ୍ରଶ୍ନର ଉତ୍ତରରେହିଁ ତୁମକୁ ମୂଲ୍ୟ ଦେବା ପାଇଁ ପଡ଼ିବ ।"

ମଧୁମନ୍ତ୍ରୀର ଦୁଇ ଆଖି, ମୁହୂର୍ତ୍ତିକ ପୂର୍ବର ସ୍ନିଗ୍ଧତା ହରାଇ କଠୋର ହୋଇଗଲା ।

ଉପକ ଆକୁଳ କଣ୍ଠରେ ପଚାରିଲା—"କିନ୍ତୁ ସେ ପ୍ରଶ୍ନରେ କି ପ୍ରୟୋଜନ ମଧୁମନ୍ତ୍ରୀ ?"

ମଧୁମତ୍ରୀ କହିଲା—"ତୁମେ କଣ ଭାବୁଛ ସେମଣି ଅନ୍ୟର ପାଦତଳେ କେବଳ ଅସହାୟ ଭାବରେ ନିବେଦିତ ହେବାହିଁ କୁସୁମର ଭବିତବ୍ୟ ? —ପୁନର୍ଜନ୍ମ କଳ୍ପନା ହୋଇପାରେ । ମାତ୍ର ପୁନର୍ଜନ୍ମରେହିଁ ମୋର ଶାନ୍ତି, ମୋର ପୂର୍ଣ୍ଣତା । ମୋତେ ଆଉ ଛଳନା ନ କରି କୁହ ସେମଣି, ପୁନର୍ଜନ୍ମ ଅଛି କି ନାହିଁ ?"

ଉପକ କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲା—"ଥାଇପାରେ, ହୁଏତ ଅଛି ।"

ମଧୁମତ୍ରୀ କେତୋଟି ମୁହୂର୍ତ୍ତ ଉପକ ଆଡ଼େ ସ୍ଥିର, ଅବିଚଳିତ ଦୃଷ୍ଟିରେ ଚାହିଁ ରହିଲା । ଉପକ ଆକୁଳ ଆବେଗରେ ମଧୁମତ୍ରୀକୁ ଆଲିଙ୍ଗନ କରିବା ପାଇଁ ଦୁଇବାହୁ ପ୍ରସାରିତ କରିବା ମାତ୍ରେ ମଧୁମତ୍ରୀ ଉପକର ଦୁଇ ଅର୍ଦ୍ଧଦଗ୍ଧ ହାତ ଦେଖି ଆର୍ତ୍ତ ଚିତ୍କାର କରି ଉଠିଲା । ଉପକ ନିଜର ଦୁଇ ଅର୍ଦ୍ଧଦଗ୍ଧ ହାତର ବିଭତ୍ସତାରେ ନିଜେ ସୁଦ୍ଧା ଏକ ଅବ୍ୟକ୍ତ ଆତଙ୍କରେ ଆତଙ୍କିତ ହୋଇ ପଡ଼ିଲା । ମଧୁମତ୍ରୀ ନିଜର ଦୁଇ କୋମଳ ରକ୍ତିମ କରପଲ୍ଲବ ଦୁଇ ଆଖି ଉପରେ ଚାପି ଧରି କାମଦାକୁ ଡାକି କହିଲା—"ଆଲୋ କାମଦା, କାହିଁ ଗଲୁ କାମଦା ଶମଣିକୁ ବିଦାୟ କରିଦେ' ଏଠୁ ।"

କାମଦା ମଧ୍ୟ ଉପକର ଦୁଇ ଅର୍ଦ୍ଧଦଗ୍ଧ ହାତ ଦେଖି ଭୟରେ ଆର୍ତ୍ତ ଚିତ୍କାର କଲା । ଉପକ ବେଜାହତ ଶିଶୁ ପରି ମଧୁମତ୍ରୀର କେଳି ମନ୍ଦିର ଛାଡ଼ି, ରାଜପଥକୁ ପଳାଇ ଆସିଲା ।

× × × ×

ବେଦବତୀର ତଟ ଭୂମି ଆସନ୍ନ ସନ୍ଧ୍ୟାର ପ୍ରାୟାନ୍ଧକାର ମଧ୍ୟରେ ଅସ୍ପଷ୍ଟ ଦିଶିଲାଣି । ଜଳାର୍ଥିନୀମାନେ କେତେବେଳକୁ ବିଦାୟ ନେଇ ସାରିଲେଣି । ବେଦବତୀର ତଟ ଭୂମି, ନିଃଶବ୍ଦ ଓ ନିର୍ଜନ । ସମାଧିସ୍ଥ

ଗମଣି ପଥ ଆକାଶ ଗଭୀର, ଗମ୍ଭୀର ଓ ଅବ୍ୟଚଳିତ । ଉପକ ବେଶବନ୍ତି ଅତିକ୍ରମ କର ଅପର ପାର୍ଶ୍ୱରେ ପହଞ୍ଚିଲା ବେଳକୁ, ଆକାଶରେ ଗୋଟିଏ, ଦୁଇଟି ହୋଇ ସନ୍ଧ୍ୟାର ତାରା ଫୁଟି ଉଠିଥିଲେ ।

ଏଠୁ, ଅଦୂରରେ ଏଇ ଦେଖା ଯାଏ···ଚମ୍ପା ଜନପଦ । ଧୂସର ଦିଗ୍‌ବଳୟର ପୃଷ୍ଠ ଭୂମିରେ, ଚମ୍ପାର ଅଶୀବନ ସଂହତର ସ୍ତୂପଚୂଡ଼ା, ତଥାପି ଅସ୍ପଷ୍ଟ ଭାବରେ ଦେଖା ଯାଉଅଛୁ । ଆଜି ରାତ୍ରି ହୁଏତ, ସେହିଠାରେ କଟିବ ।

—ଆଜି ତଥାପି ମନେ ପଡ଼େ ଯୌବନର ପ୍ରାରମ୍ଭରେ ବହୁଦିନ ତଳର ମଧୂମନ୍ତ୍ରୀର କଥା । ମଧୂମନ୍ତ୍ରୀ ଗୃହିଁଥିଲା ପୁନର୍ଜନ୍ମ, ହୁଏତ ବ୍ୟର୍ଥ ନାରୀତ୍ୱ ଓ ମାତୃତ୍ୱର ନୂତନ ସାର୍ଥକତା ପାଇଁ । ମଧୂମନ୍ତ୍ରୀର ସେହି ଆକୁଳ ଜିଜ୍ଞାସା, ଏବେ ସୁଦ୍ଧା ଉପକର ମନେ ପଡ଼େ— "ଅନ୍ୟର ପାଦତଳେ କେବଳ ଅସହାୟ ଭାବରେ ନିବେଦିତ ହେବାହିଁ କଣ କୁସୁମର ଭବିତବ୍ୟ ?"

ଉପକ ମଧ୍ୟ ଗୃହେ ପୁନର୍ଜନ୍ମ, ଜୀବନର ନୂତନ ଉପଲବ୍ଧି ପାଇଁ ।

( ଦୁଇ )

ବୈଦେହରୁ ବିଦାୟ ନେବାର ଆଜକୁ ପ୍ରାୟ ଏକଯୁଗ ବିତ ଗଲଣି । ମଧୂମନ୍ତ୍ରୀର କେଳି ମନ୍ଦିରରୁ ସେ ଦିନ ବେଦାହତ ଶିଶୁ ପରି ପଳାୟନ ପରେ, ବହୁ କଠୋର ବ୍ରତ, ଉପବାସ ଓ ସାଧନାରେ ଉପକର ଦେହ ଶୀର୍ଣ୍ଣ ହୋଇଛୁ, ଯୌବନ ପ୍ରାୟ ଶେଷ ହୋଇଛୁ; ତଥାପି ବିଶୁଷ୍କ ବିଦଳିତ ବକୁଳ ପରି ସେଥିରୁ କାମନାର ସୁରଭି ନିଭି ନାହିଁ । ଏବେ ସୁଦ୍ଧା ବେଳେ ବେଳେ, ମଧୂମନ୍ତ୍ରୀର ସ୍ମୃତି, ପୌଢ଼ତ୍ୱ ପାଣ୍ଡୁରିତ ହୃଦୟ ବନରେ ଅଦିନ

ମଳୟ ପରି ଜାଗି ଉଠେ । ମାତ୍ର ଉପକ ଅତି କଠୋର ଭାବରେ କାମଦାର ସେ ଲେଲିହାନ ଶିଖା ଦମନ କରିଛନ୍ତି । ତାର ସାଧନା, ସଂଯମ ଓ ନିଷ୍ଠା, ଆଜୀବକ ସମାଜରେ ଉପକଙ୍କୁ ପୂଜନୀୟ ଓ ମହନୀୟ କରିଅଛି । ତଥାପି କେବେ କେବେ, କୌଣସି ଅସତର୍କ ମୁହୂର୍ତ୍ତରେ ସଂଯମର ସମସ୍ତ ଶୃଙ୍ଖଳ ଭାଙ୍ଗି, ଶୀତକ୍ଲିଷ୍ଟ ପାନ୍ଥର ଅରଣ୍ୟରେ, ମଧୂମତୀ ରକ୍ତିମ ପଲାଶରେ ଅଗ୍ନିମୟ ଉଚ୍ଛ୍ୱାସ ପରି ଜାଗି ଉଠେ । ଉପକ ନିଜର ଦୁଇ ଅର୍ଦ୍ଧଦଗ୍ଧ ହାତ ଆଡ଼େ ଚାହିଁ, ପୁଣି ଅତି କଠୋର ଭାବରେ ସେ ମାନସିକ ଚଞ୍ଚଳତା ଦମନ କରିଦିଏ ।

ମଧୂମତୀ ଚାହିଁଥିଲା ପୁନର୍ଜନ୍ମ...ଉପକ ଚାହେଁ ପୁନର୍ଜନ୍ମ । କିନ୍ତୁ ପୁନର୍ଜନ୍ମ ନାହିଁ ।

ପଞ୍ଚଭୂତ ପଞ୍ଚଭୂତରେ ଲୀନ ହୋଇଯାଏ ।

ପୁନର୍ଜନ୍ମ ନାହିଁ ।

ଏହି ନୀତିନହିଁ ଏକମାତ୍ର ସତ୍ୟ ।

ତା ହେଲେ ସଂଯମର ନାଗ ଫାଶରେ ସେ ଜୀବନକୁ ତିଳେ ତିଳେ ଏପରି ଦଗ୍ଧ ଓ ନିଷ୍ପେଷିତ କରି ନିର୍ବାଣ ପାଇଁ ଏ ସାଧନାର ସାର୍ଥକତା କେଉଁଠି ?

ଚମ୍ପାର ଆଜୀବ୍ୟ ସଭାରେ ସେଦିନ ନିଗନ୍ଥନାଥ ପୁତ୍ରଙ୍କ ଜଣେ ଶିଷ୍ୟ କଶ୍ୟପ ସହିତ ବହୁତ ଯୁକ୍ତିତର୍କ ହେଲା । ପଲାସପୁର ପଥରେ ଯାଉଁ ଯାଉଁ କଶ୍ୟପ ଚମ୍ପାର ଆଜୀବ୍ୟ-ସଂହତିରେ କିଛି ଦିନ ବିଶ୍ରାମ ପାଇଁ ରହିଥିଲେ । ଉପକ ପହଞ୍ଚିଲା ବେଳକୁ ଆଜୀବ୍ୟ ସଭାମଣ୍ଡପ ବହୁ ଶ୍ରମଣ ତଥା ଚମ୍ପାର ଅନ୍ୟ ସାଧାରଣ ନାଗରିକଙ୍କ ଦ୍ୱାରା ଜନାକୀର୍ଣ୍ଣ ହୋଇଥିଲା । ମଣ୍ଡପ ମଝିରେ କଶ୍ୟପ ଯୋଗାସନରେ ବସି ଶ୍ରୋତୃମଣ୍ଡଳୀକୁ ଶ୍ରମଣଫଳସୂତ୍ର ବୁଝାଉଥିଲେ । କଶ୍ୟପ କହୁଥିଲେ, "ପୁନର୍ଜନ୍ମ ଅଛି କି ନାହିଁ ନିଗନ୍ଥ ଜାଣନ୍ତି ନାହିଁ । ଶ୍ରମଣର ସାଧନାରେ ସାର୍ଥକତା ଅଛି କି ନାହିଁ ତା ମଧ୍ୟ ନିଗନ୍ଥ ଜାଣନ୍ତି ନାହିଁ ।"

ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ପଚାରିଲେ—"ପାପ ଆଉ ପୁଣ୍ୟ ମଧ୍ୟରେ ପାର୍ଥକ୍ୟ କ'ଣ ? ଅଜିତ କେଶ କମ୍ବଳୀ କହନ୍ତି, ତପ, ଯଜ୍ଞ, ଦାନ ଓ ଧର୍ମରେ ପୁଣ୍ୟ ନାହିଁ ବା ହତ୍ୟା, ରକ୍ତପାତ ଓ ଲୁଣ୍ଠନରେ ପାପ ନାହିଁ ।"

କାଶ୍ୟ କହିଲେ—"ନିଗନ୍ଥ ତାହା ମଧ୍ୟ ଜାଣନ୍ତି ନାହିଁ ।"

ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ବ୍ରାହ୍ମଣ ପରିହାସ ମିଶ୍ରିତ କଣ୍ଠରେ ପଚାରିଲେ, "ତା ହେଲେ ନିଗନ୍ଥ କ'ଣ ଜାଣନ୍ତି ?"

କାଶ୍ୟ କହିଲେ—"ନାଥପୁତ୍ର କହନ୍ତି, କାମନାର ଗ୍ରନ୍ଥି ଛିନ୍ନ କରି, "ଚତୁଃ ଯମ" ଦ୍ୱାରା ପରିବୃତ ହୋଇ ନିଗନ୍ଥ ମୋକ୍ଷ ଲାଭ କରେ ।"

ଶୋତୃମଣ୍ଡଳୀ ମଧ୍ୟରେ, ମଣ୍ଡପ ତଳେ ଠିଆ ହୋଇ ଉପକ ପଚାରିଲେ—କେଉଁଟା ସତ୍ୟ କାଶ୍ୟ ? ଜୀବନ ନା ମୋକ୍ଷ ?"

କାଶ୍ୟ ଅର୍ଦ୍ଧନିମିଳିତ ଦୁଇ ଆଖି ମେଲାଇ ପ୍ରଶ୍ନ କର୍ତ୍ତାଙ୍କ ଆଡ଼େ ଚାହିଁ ଦେଖିଲେ—ମଣ୍ଡପ ତଳେ ଅଦୂରରେ ଛିଡ଼ା ହୋଇଛନ୍ତି ସ୍ମିତବଦନ, ଶମଣ ଶ୍ରେଷ୍ଠ, ଗୋଶାଲଥୀ ପୁତ୍ରଙ୍କ ଶିଷ୍ୟ ଏକଦଣ୍ଡୀ ଉପକ ।

କାଶ୍ୟ ପରିହାସ ଜର୍ଜରିତ କଣ୍ଠରେ କହିଲେ—" ଏ ଯେ ଶମଣ ଶ୍ରେଷ୍ଠ ଉପକ, ବଦେହର ରୂପଜୀବୀ ମଧୁମନ୍ତ୍ରାର କେଳି-ମନ୍ଦିରରେ ଏହାଙ୍କର ଦଣ୍ଡ, କମଣ୍ଡଳୁ ଓ ଚୀବର ଏବେ ସୁଦ୍ଧା ପଡ଼ିଛି ।"

ସମବେତ ଶ୍ରୋତୃ ମଣ୍ଡଳୀର ଅଟ୍ଟହାସରେ ଅଜାତ୍ୟ ସଭା-ପ୍ରାଙ୍ଗଣ ମୁଖରିତ ହୋଇ ଉଠିଲା ।

ଉପକ ଏଥିରେ ବିଚଳିତ ନ ହୋଇ କହିଲେ—"ଚତୁଃ ଯମ—ସମ୍ବୃତ କାଶ୍ୟ ତା' ହେଲେ ବଦେହର ରୂପଜୀବୀ ଗଣିକା ମଧୁମନ୍ତ୍ରାର କେଳି ମନ୍ଦିର ସହିତ ଅପରିଚିତ ନୁହନ୍ତି ।"

ଉପକଙ୍କ ଏହି ପ୍ରତ୍ୟୁକ୍ତିରେ ଶ୍ରୋତୃ ମଣ୍ଡଳୀର ଅଟ୍ଟହାସ ଦ୍ୱିଗୁଣିତ ହୋଇଗଲା । ପୌଢ଼, ମୁଣ୍ଡିତ, ଅଚେଳକ କଶା ଉପକଙ୍କ ଏ ଉକ୍ତିରେ ଅହତ ହୋଇ, ନୀରବରେ ତଳକୁ ଚାହିଁ ରହିଲେ ।

କଶା କହିଲା—"ବହୁବର୍ଷ ତଳେ ଗୁରୁ ମାସ୍କା ପାଇଁ ମୁଁ ବଦେହର ଆଜୀବକ ସଭାରେ ବହୁଥିଲି । ଥରେ ରୂପଜୀବୀ ମଧୁମତ୍ରୀ ଭିକ୍ଷା ଦେବା ପାଇଁ ମୋତେ ଆମନ୍ତ୍ରଣ କରି, ପୁନର୍ଜନ୍ମ ଅଛି କି ନାହିଁ ବୋଲି ପଚାରିଥିଲା । ସେତେବେଳେ ମଧୁମତ୍ରୀର ଭବନରେ, ପରିତ୍ୟକ୍ତ ଦଣ୍ଡ କମଣ୍ଡଳୁ ଓ ଚୀବର ଦେଖି, ତାହା କାହାର ବୋଲି ପଚାରିଥିଲି । ତାହା ସଂଜୟ ବେଲଥୀ ପୁତ୍ରଙ୍କ ଶିଷ୍ୟ-ଶିରୋମଣି ଉପକଙ୍କର ଦଣ୍ଡ, ଚୀବର ଓ କମଣ୍ଡଳୁ ବୋଲି ସେତେବେଳେ ଶୁଣିଥିଲି ।"

ଆଜୀବକମାନଙ୍କ ପ୍ରତି ନାନା କଟୂକ୍ତି ଓ ପରିହାସ କୋଳାହଳ ମଧ୍ୟରେ ଶ୍ରୋତାମାନଙ୍କର ଗହଳି ଭାଙ୍ଗିଗଲା । ଆଜୀବକ ସଭାର ଶମଣମାନଙ୍କ ମଧ୍ୟରେ କେହି ଉପକଙ୍କ ପକ୍ଷ ଆଉ କେହି ବା କଶାଙ୍କ ପକ୍ଷ ନେଇ, ନିଜ ନିଜ ମଧ୍ୟରେ କଳହ ଆରମ୍ଭ କରିଦେଲେ । କିଛି ସମୟରେ ଆଜୀବକସଭା ନିର୍ଜନ ଓ ନିଃଶବ୍ଦ ହୋଇଗଲା । ଆଜୀବକ-ମାନଙ୍କର ବିଧାନ ଅନୁସାରେ, ଦିନସାରା ରୌଦ୍ରଦୀପ୍ତ ଆକାଶ ତଳେ, ସେମାନେ ବାହାରେ ଶୟନ କରନ୍ତି । ମାତ୍ର ରାତି ହେଲେ ସେମାନଙ୍କୁ ନିଜ ନିଜ, ରୁଦ୍ଧ ଅନ୍ଧକାର ପ୍ରକୋଷ୍ଠର ପାଷାଣ ଶଯ୍ୟା ଉପରେ ଶୟନ କରିବା ପାଇଁ ପଡ଼େ । ଉପକ ଗୋଟିଏ ଶୂନ୍ୟ ପ୍ରକୋଷ୍ଠ ଦେଖି, ତା ଭିତରକୁ ଚାଲିଗଲେ ।

ବାହାରେ ଜ୍ୟୋତ୍ସ୍ନା ପୁଲକିତା ରାତି ପ୍ରତୀକ୍ଷମାଣା ବିଳାସିନୀ ପରି, ସୁପ୍ତିମୂର୍ଚ୍ଛିତ ଆକାଶରେ ଚନ୍ଦ୍ରର ମୁକୁରକୁ ଚାହିଁ ରୂପର ଶୃଙ୍ଗାର କରୁଥିଲା ।

ନିଶାର୍ଦ୍ଧ........

ଚମ୍ପାର ରାଜ ପଥରେ ପ୍ରହରୀ ରାତ୍ରିର ଦ୍ୱିତୀୟ ଯାମ ଘୋଷଣା କରିଗଲା । ଉପକଙ୍କ ଆଖିରେ ନିଦ ନାହିଁ । ଉପକ ପ୍ରକୋଷ୍ଠର ପାଷାଣ ଚତ୍ୱର ଉପରେ ବସି, କେତୋଟି ମୁହୂର୍ତ୍ତ ବାହାରର ଜ୍ୟୋତ୍ସ୍ନାଲୋକିତ ପ୍ରାଙ୍ଗଣ ଆଡ଼େ ଚାହିଁଲେ । ତା'ପରେ ପ୍ରକୋଷ୍ଠର ଗୋଟିଏ କୋଣରୁ ନିଜ ଦଣ୍ଡ ଆଣି ହାତରେ ଧରି, ବାହାରକୁ ଚାଲି ଆସିଲେ ।

ଅଳ୍ପ ଦୂରରେ ଚାପାଙ୍କର ପ୍ରକୋଷ୍ଠ ।

ଉପକ ଚାପାଙ୍କର ପ୍ରକୋଷ୍ଠ ପାଖରେ ଠିଆ ହୋଇ ଅନୁଚ୍ଚ କଣ୍ଠରେ ଚାପାଙ୍କର ନାମ ଧରି ଡାକିଲେ ।

କିଛି ସମୟ ପରେ, ଚାପା ନିଦ୍ରାତୁର କଣ୍ଠରେ ପଚାରିଲେ—"କିଏ ?"

ଉପକ କହିଲେ—"ମୁଁ ଉପକ ।"

ଚାପା ପଚାରିଲେ—"ଉପକ ! ରାତ୍ରି ବର୍ତ୍ତମାନ କେଉଁ ପ୍ରହରରେ ? ତୁମେ ଏ ନିଶାର୍ଦ୍ଧରେ କଣ କରୁଛ ?"

ଉପକ କହିଲେ—ତୁମକୁ କେତେକ କଥା ପଚାରିବା ପାଇଁ ଅଛି ଚାପା !

ଚାପା କହିଲେ—"ଭିତରକୁ ଆସ ।"

ଉପକ କହିଲେ—ବାହାରେ, ସୁନ୍ଦର ଜ୍ୟୋତ୍ସ୍ନାଲୋକିତ ରାତ୍ରି । ଏ ପାଷାଣ ଅନ୍ଧକୂପ ମଧ୍ୟରେ ନୁହେଁ; ଉଦ୍ୟାନକୁ ଆସ ।

ଚାପା ସମ୍ମୋହିତ ପରି ଉପକଙ୍କ ପଛେ ପଛେ ଆସିଲେ । ଉଦ୍ୟାନର ଏକ ନିଭୃତ ଅଶୋକ କୁଞ୍ଜ ତଳେ ଅକେଳକ ଲଣ୍ଠିତ ଚାପା ଓ କୁଠାକୁଟିବୃତ କୌପୀନ ପରିହିତ ଉପକ, ଆସି ବସିଲେ । ଅପୁଷ୍ପିତ ଅଶୋକ ଯେପରି କେଉଁ ଶୋଭନାର ପାଲକ୍ତକ, ସୁନୂପୁର

ବାମ ଚରଣରୁ ପଦାଘାତର ଅତୃପ୍ତ ଦୋହଦ ଧରି ଠିଆ ହୋଇ ରହିଛୁ । ଉପକ ଏପରି କଥା ଆରମ୍ଭ କରିବେ, ବୁଝି ନ ପାରି କିଂକର୍ତ୍ତବ୍ୟବିମୂଢ଼ ପରି ଅଣସ୍ତସ୍ତ ଜ୍ୟୋତ୍ସ୍ନା ଆଡ଼େ ଚାହିଁ ରହିଲେ ।

କାଶୀ କହିଲେ—"ମୋତେ କ୍ଷମା କରିବ ଉପକ, ମୁଁ ତୁମକୁ ଆଜି ଅଯଥା ଲଜ୍ଜିତ କରିଅଛୁ ।"

ଉପକ ପଚାରିଲେ—"ମଧୁମତ୍ତା ସହିତ ତମର ପରିଚୟର କାହାଣୀ କହିବ ମୋତେ କାଶୀ ?"

କାଶୀ କହିଲେ—"ମଧୁମତ୍ତା ସହିତ ମୋର ପରିଚୟ ଏକ ଦୁର୍ଘଟଣା । ଆଜକୁ ବହୁବର୍ଷ ତଳେ ·····"

କାଶୀ ମୁହୂର୍ତ୍ତିକ ପାଇଁ ନୀରବ ହୋଇଗଲେ ।

ବହୁବର୍ଷ ତଳେ·····

ବିଦେହରେ ସେ ଦିନ ବସନ୍ତୋତ୍ସବ । ବିଦେହର ନାଟ୍ୟଶାଳାକୁ ସେ ଦିନ ମଧୁମତ୍ତା ଆସିଥିଲା ନୃତ୍ୟାମୋଦରେ ବସନ୍ତୋତ୍ସବର ସନ୍ଧ୍ୟାକୁ ଆମୋଦିତ କରିବା ପାଇଁ । କାଶୀ, ରାଜପଥରେ ଠିଆ ହୋଇ ବାତାୟନ ଦ୍ୱାରରେ ସେ' ଦିନ ଦେଖିଥିଲେ, ମଦାବେଶ ବିହ୍ୱଳ ମଧୁମତ୍ତାର ନୃତ୍ୟ । କାଞ୍ଚୀ-ପୀଡ଼ିତ ଗୁରୁ ନିତମ୍ବ ଉପରେ ନ୍ୟସ୍ତ, ବାମ ହସ୍ତ ସନ୍ଧିରେ ସ୍ତିମିତ କନକ ବଳୟ, କୁଟ୍ଟିମ ଉପରେ ଲୁଳିତ କୁସୁମ ଉପରେ ପାଦାଙ୍ଗୁଷ୍ଠିର ନମ୍ର ସଞ୍ଚାରଣ, ବିହ୍ୱଳ ଦୁଇ ଦୀର୍ଘାକ୍ଷିରେ ସୁନ୍ଦର ଆବେଶ,···କାଶୀଙ୍କୁ ଆକୁଳ କରି ଦେଇଥିଲା, ସ୍ୱୀକାର ନ କଲେ କାଶୀ ମିଥ୍ୟାଶ୍ରୟୀ ହେବେ । ପୁଣି ନୃତ୍ୟ ଆରମ୍ଭ ହେବ । ମୃଦଙ୍ଗର ମନ୍ଦ୍ର ଧ୍ୱନିରେ ନାଟ୍ୟଶାଳା ପୁଣି ମୁଖରିତ ହୋଇ ଉଠିଲା । କାଶୀ, ବ୍ୟାଧର ଶରାଘାତରୁ ପ୍ରାଣ ରକ୍ଷା କରିବା ପାଇଁ ତ୍ରସ୍ତ ଶଶକ ପରି,

ସେଠୁ ପଳାୟନ କଲେ । ମାତ୍ର ସେହି ଦିନୁ ଗୃହହାସିନୀ ମଧୁମତ୍ତୀର ଚିନ୍ତା ଶ୍ରୀଣାଙ୍କୁ ଅଧୀର ଓ ଅନବସ୍ଥିତ କରିଦେଲା । ମଧୁମତ୍ତୀଙ୍କୁ ରୂପଜୀବ୍ୟା ନଟିକାର କାମନା କଳୁଷିତ ଜୀବନରୁ ମୁକ୍ତ ଦେଇ ନିର୍ବାଣର ଦୀକ୍ଷା ଦେବା ପାଇଁ ଶ୍ରୀଣ ମନେ ମନେ ବହୁ ଉପାୟ ଚିନ୍ତା କଲେ ।

ଶ୍ରୀଣ କହିଲେ, "ସେ ଦିନ କୋଜାଗରୀ ପୂର୍ଣ୍ଣିମାର ସନ୍ଧ୍ୟା । ମଧୁମତ୍ତୀର ଭବନ ସମ୍ମୁଖରେ, ରାଜପଥର ଏକ ପାର୍ଶ୍ୱରେ ଯାଉଁ ଯାଉଁ, ଆଉ ଥରେ ମଧୁମତ୍ତୀଙ୍କୁ ସେହି ଭଙ୍ଗୀରେ ଦେଖିବା ପାଇଁ ମନ ମୋର ଅକୁଳ ହୋଇ ଉଠୁଥିଲା, ନ କହିଲେ ମିଥ୍ୟାବାଦୀ ହେବି । ମରଣଶୀଳ ଦେହ ଏତେ ସୁନ୍ଦର, କାହିଁକି ଓ କିପରି ହୋଇପାରେ ଚିନ୍ତା କରି ଆସୁଥିବା ବେଳେ ଭବନ ଦ୍ୱାରରେ ମଧୁମତ୍ତୀଙ୍କୁ ଦେଖି ମୁହୂର୍ତ୍ତିକ ପାଇଁ ମୁଁ ରହିଥିଲି ।

ଉପକ ପଚାରିଲେ—"ତା' ପରେ ?"

ଶ୍ରୀଣ କହିଲେ—"ଭୁବନ ବିମୋହିନୀ ମଧୁମତ୍ତୀର ସେହି ନୟନାଭିରାମ ଭଙ୍ଗୀ, କଙ୍କଣ ଓ ବଳୟ ଶୋଭିତ ବାମହସ୍ତ ସେହିପରି ଗୁରୁ ନିତମ୍ବ ଉପରେ ନ୍ୟସ୍ତ ରହିଥିଲା । ଶ୍ୟାମା ଲତାପରି ଦକ୍ଷିଣ ହସ୍ତ, ତଳକୁ ଲମ୍ବି ଆସିଥିଲା । ମୁଁ ମନେ ମନେ ଭାବୁଥିଲି କିଏ ସୁନ୍ଦର—ଶରଦିନ୍ଦୁକାନ୍ତି ମଧୁମତ୍ତୀ ନା କୋଜାଗରୀ ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ? ମଧୁମତ୍ତୀ ମୋତେ ଆମନ୍ତ୍ରଣ କରି କହିଲା—"ଭିତରେ ପଦାର୍ପଣ କରନ୍ତୁ ଶ୍ରମଣ ।"

ଉପକ ପଚାରିଲେ—"ତା' ପରେ ?"

ଶ୍ରୀଣ କହିଲେ—"ତା ପରର କାହାଣୀ ବହୁ ସଂଯମ ଓ ସାଧନା ମଧ୍ୟରେ ମୁଁ ବିସ୍ମୃତ ହେବା ପାଇଁ ଚାହିଁଛି, ମାତ୍ର ପାରି ନାହିଁ । ମଧୁମତ୍ତୀର କେଳି ମନ୍ଦିରକୁ ସେ ଦିନ ଆସିଥିଲେ ବିଦେହର ଶ୍ରେଷ୍ଠୀ

ମାଲକେକୀ, ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରାର ମୂଲ୍ୟ ଦେଲା । ମାତ୍ର ଉତ୍ପୋଷଧର ଛଳନା କରି ମଧୁମନ୍ତ୍ରୀ ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲା । ମାଲକେକୀ ବିଦାୟ ନେବା ପରେ, ମଧୁମନ୍ତ୍ରୀର ଆମନ୍ତ୍ରଣରେ ମୁଁ ଆସିଲି କେଳିମନ୍ଦିର ଭିତରକୁ । ସେ ଦିନ ମଧୁମନ୍ତ୍ରୀର କି ସେ ବେଶ ରଚନା ! ବିରଳ ନୀଳାଂଶୁକ ତଳେ ମଧୁମନ୍ତ୍ରୀର ନଗ୍ନ ଦେହରେ କି ସେ ରୂପଶ୍ରୀ ! ଅଳକ୍ତ ସିକ୍ତ ଦୁଇ ଅଧରରେ କି ସେ ତୃଷ୍ଣା ! ମୁଁ ସଂଯମ ହରାଇ, ଆତ୍ମ ବିସ୍ମୃତ ହୋଇ ପଡ଼ିଥିଲି ଉପକ ।"

ଉପକ ପଚାରିଲେ—"ତା' ପରେ ?"

କଣ୍ଠ କହିଲେ—"ଦଳିତ କୁସୁମଶଯ୍ୟା ଉପରେ ମଧୁମନ୍ତ୍ରୀ ଦେହ ନ୍ୟସ୍ତ କରି, ଅଙ୍ଗାବରଣ ଈଷତ୍ ଅନାବୃତ କରି, ସ୍ମିତ ହସି ମୋତେ କହିଲା—ଏହି ଶଯ୍ୟାରେ ଉପବେଶନ କରନ୍ତୁ ଶମଣ ।"

ଉପକର ଆଖି ଆଗରେ ସେତେବେଳେ ଭାସି ଉଠୁଥିଲା ଗୋଟିଏ ଯୁଗ ତଳର ଏକ ସଂଧ୍ୟାରେ, ମଧୁମନ୍ତ୍ରୀର କେଳି ମନ୍ଦିରରେ ଅନ୍ୟ ଗୋଟିଏ ଦୃଶ୍ୟ ।

କଣ୍ଠ କହିଲେ—"ତା ପରେ ମଧୁମନ୍ତ୍ରୀ କଟିରୁ କାଞ୍ଚିଦୁକୁଳ ଧୀରେ ଧୀରେ ଶିଥିଳ କରି ପରିଚାରିକାମାନଙ୍କୁ ନାମ ଧରି ଡାକିଲା, ଅଲେ କାମଦା, କାମନ୍ଦକୀ ପରଭୃତିକା କିଏ ଅଛ ? କେହି ଶୁଣିଲେ ନାହିଁ । ତା' ପରେ..."

ଉପକ ପଚାରିଲେ—"ମଧୁମନ୍ତ୍ରୀ ସ୍ୱ ହସ୍ତରେ ତୁମକୁ ଆସବ ଅର୍ପଣ କରିଥିଲା କଣ୍ଠ ? "

କଣ୍ଠ କହିଲେ— "ତମକୁ କହୁଛି ତ ଉପକ, ସେ ଦିନର ସଂଧ୍ୟା ମୋ ଜୀବନରେ ଏକ କଳଙ୍କ । ମଧୁମନ୍ତ୍ରୀର ଅର୍ପିତ ଆସବ, ସେ ଦିନ ମୁଁ ଆକଣ୍ଠ ପାନ କରିଥିଲି, ମଧୁମନ୍ତ୍ରୀର ଲୋଭନୀୟ ରୂପଶ୍ରୀ, ସ୍ଫୁରିତ ଜବାଧର ଆଜି ମୋତେ ଗ୍ରହିଁ ଗ୍ରହିଁ ।"

ଉପକ ପଚାରିଲେ—"ତା' ପରେ ?"

କାଶା କହିଲେ—"ତା ପରେ ମୁଁ ଅସ୍ପଷ୍ଟ ହୋଇ କହିଲି ଯୌବନ ପୁଷ୍ପିତା ଏ ଦେହ ନାଗକନ୍ୟାର, ଏ ସବୁ କ୍ଷଣସ୍ଥାୟୀ ମଧୁମତ୍ତା ।"

ମଧୁମତ୍ତା ତହୁଁ ମୋ ଆଡ଼େ ଚାହିଁ ଈଷତ୍ ହସି କହିଲା, "କାମଦା, କାମଦକ୍ଷୀ, ପରଭୃତକା କେହି ନାହାନ୍ତି । ମୋର ବକ୍ଷରେ ଚେଳି ଦୁକୂଳର କଠୋର ବନ୍ଧନ, ବହୁ ପୀଡା ଦେଲାଣି । ଟିକିଏ ଶିଥିଳ କରିଦେଇ ପାରିବ ଶମଣ ?"

ମୁଗ୍ଧ ପରି ମୁଁ ମଧୁମତ୍ତାର ବକ୍ଷରୁ ଚେଳିପାଶ ଶିଥିଳ କରୁ କରୁ ଅସ୍ପବସ୍ତ ହୋଇ ପଡ଼ିଲି । ଚେଳିପାଶ ଶିଥିଳ କରୁ କରୁ, ଚେଳିର ବନ୍ଧନ ଖସି ତଳେ ପଡ଼ିଗଲା । ମଧୁମତ୍ତା ବିରଳ ଅବଗୁଣ୍ଠନରେ ଉଦ୍ଭିନ୍ନ କମଳକୋରକ ପରି ବକ୍ଷୋଜକୁ ଆବୃତ କରିବାର ଉଦ୍ୟମରେ ତାହାକୁ ଅଧିକ ଅନାବୃତ କରି ପଚାରିଲା— "ମାଳତେଳୀ ଠାରୁ ବେଶୀ ମୂଲ୍ୟ ଦେଇ ପାରିବ ଶମଣ ?"

କିଂକର୍ତ୍ତବ୍ୟବିମୂଢ଼ ପରି ମୁଁ କହିଲି—"ଭିକ୍ଷାଜୀବୀ ଶମଣ, ସ୍ୱର୍ଣ୍ଣମୁଦ୍ରା କେଉଁଠୁ ପାଇବ ମଧୁମତ୍ତା ?"

ମଧୁମତ୍ତା ସ୍ମିତ ହସି କହିଲା—"ସ୍ୱର୍ଣ୍ଣ ମୁଦ୍ରାରେ ମୋର ପ୍ରୟୋଜନ ନାହିଁ ଶମଣ । ବିଦେହ ରାଜକୋଷର ଦୈନିକ ଆୟ, ମୋର ଏକ ରାତିର ଆୟର ଅର୍ଦ୍ଧାଂଶ । ମୁଁ ଚାହେଁ ଗୋଟିଏ ପ୍ରଶ୍ନର ଉତ୍ତର ।"

ମୁଁ ବିସ୍ମୟାବିଷ୍ଟ କଣ୍ଠରେ ପଚାରିଲି—"କି ପ୍ରଶ୍ନ ମଧୁମତ୍ତା ?"

ଉପକ କହିଲେ, "ପୁନର୍ଜନ୍ମ ଅଛି କି ନାହିଁ ?"

କାଶୀ କହିଲେ—"ତୁମକୁ ହୁଏ ତ ଠିକ୍ ସେହି ପ୍ରଶ୍ନ ଦେଇଁର ଥିଲି ମଧୁମତୀ ।"

ଉପକ ପଚାରିଲେ—"କିନ୍ତୁ ତୁମେ କଅଣ ଉତ୍ତର ଦେଲ କାଶୀ ?"

କାଶୀ କହିଲେ—"ମୁଁ କହିଲି ଜନ୍ମ ମିଥ୍ୟା, ପୁନର୍ଜନ୍ମ କଳ୍ପନା । ପୁନର୍ଜନ୍ମରେ ତୁମର କି ପ୍ରୟୋଜନ ମଧୁମତୀ ?

ମଧୁମତୀ କହିଲା— "ଅନ୍ୟର ପାଦତଳେ କେବଳ ନିବେଦିତ ହେବାହିଁ କ'ଣ କୁସୁମର ଭବିତବ୍ୟ ? ଏ ଜୀବନରେ ଯେତେକ ବ୍ୟର୍ଥ ସ୍ୱପ୍ନ, କ'ଣ ଅନ୍ୟ ଜୀବନରେ ସଫଳ ହେବ ନାହିଁ ?"

ମଧୁମତୀର ମଦବିହ୍ୱଳ ଦୁଇ ଆଖି, ବାଷ୍ପାକୁଳ ହୋଇ ଉଠିଲା ।

ମୁଁ ଅସହାୟ ପରି କହିଲି—"ପୁନର୍ଜନ୍ମ ଅଛି । ପୁନର୍ଜନ୍ମ ନାହିଁ ।"

ମଧୁମତୀ ଆକୁଳ କଣ୍ଠରେ ପଚାରିଲା···"ତା ହେଲେ ପୁନର୍ଜନ୍ମ କ'ଣ ଅଛି ଶମଣ ?"

ମୁଁ କହିଲି—"କିନ୍ତୁ ତୁମେ ସେହି ପୁନର୍ଜନ୍ମରେ ଅମଳିନ କମଳର ଏହି ରୂପଶ୍ରୀ ଧରି ପୁଣି ଜନ୍ମ ଲାଭ କରିବ ବୋଲି କି ସ୍ଥିରତା ଅଛି ମଧୁମତୀ ?"

ମଧୁମତୀ, ତା' ପରେ ଅନାବୃତ ଦେହର ସକଳ ଜଡ଼ତା ପରିହାର କରି, ମୋତେ ନିବିଡ଼ ଆଲିଙ୍ଗନ ଭିତରେ ଚାପି ଧରି, ସୁରସିକ୍ତ ନିଃଶ୍ୱାସରେ ମୋର କଣ୍ଠରୋଧ କରି, ମୋତେ କହିଲା— "ମୋତେ ପୁନର୍ଜନ୍ମ ଦିଅ ଶମଣ । ମୁଁ ଚାହେଁ ଏହି ମରଣଶୀଳ ଦେହର ରୂପଶ୍ରୀ ଧରି, ପୁଣି ଥରେ ନବ ଜନ୍ମ ପାଇବା ପାଇଁ ।"

କିଶା କହିଲେ—"ତା ପରେ ମୋତେ ଆଉ କିଛି ଜିଜ୍ଞାସା କର ନାହିଁ ଉପକ । ସେହି ଦିନରୁ ମୁଁ ଆଉ ବିଦେହକୁ ଫେରି ନାହିଁ, ସେ ଦିନର କଳଙ୍କର କାଳିମା ନିଭାଇବା ପାଇଁ କଠୋର ବ୍ରତ ଓ ତପ ଆଚରଣ କରୁଛି । କିନ୍ତୁ ତୁମେ କହି ପାରିବ ଉପକ, କେଉଁ କାମନାରେ ମଧୁମତ୍ତା ଚାହିଁଥିଲା ପୁନର୍ଜନ୍ମ ?"

ଉପକ ଧୀରେ ଧୀରେ ମଳିନ ପଡ଼ି ଆସୁଥିବା ଜ୍ୟୋତ୍ସ୍ନାଲୋକ ଆଡ଼େ ଚାହିଁ କହିଲେ—"କିଏ ଜାଣେ ?"

କିଶା କହିଲେ—"ଐଶ୍ୱର୍ଯ୍ୟ ଓ ପ୍ରବୃତ୍ତିର କାରାଗାର ମଧ୍ୟରେ ଆଜୀବନ ବନ୍ଦିନୀ ରହି ରହି ମଧୁମତ୍ତା ହୁଏ ତ କାମନା କରୁଥିଲା କେଉଁ ଏକ ନାମହୀନ ଜନପଦର ଅଖ୍ୟାତ, ଅଜ୍ଞାତ କୋଣରେ କେଉଁ ଏକ ସାମାନ୍ୟ ଗୃହସ୍ଥଳୀର ପରିଚ୍ଛନ୍ନ, ଶୁଭ୍ର ଅଙ୍ଗନ ।"

ଉପକ ପଚାରିଲେ—"ପୁନର୍ଜନ୍ମ ଅଛି କିଶା ? ମୁଁ ମଧ୍ୟ ଚାହେଁ ପୁନର୍ଜନ୍ମ ।"

କିଶା କହିଲେ—"କିନ୍ତୁ ତୁମେ କ'ଣ ନିର୍ବାଣ ଅଭିଳାଷୀ ନୁହଁ ଉପକ ? ଶ୍ରମଣର ପୁଣି ପୁନର୍ଜନ୍ମ ପାଇଁ ଆକାଂକ୍ଷା ?"

ଉପକ କହିଲେ—"ତୁମେ ଭ୍ରାନ୍ତ କିଶା ! ଜୀବନ ଯଦି ମୋହଗ୍ରସ୍ତ ମାୟା, ନିର୍ବାଣ ବୁଦ୍ଧିଗ୍ରସ୍ତ ମନର ପରିକଳ୍ପନା ! ମୁଁ ମଧ୍ୟ ଚାହେଁ ପୁନର୍ଜନ୍ମ ।... କିନ୍ତୁ ପୁନର୍ଜନ୍ମ ନାହିଁ । ପୁନର୍ଜନ୍ମ ନାହିଁ ! ଏଇ ଶିଶିରସିକ୍ତ ପ୍ରିୟଙ୍ଗୁବୀଥିକାର ପତ୍ର ଶୀର୍ଷରେ, ଏ ଯେଉଁ ରାତି ବିଦାୟ ନେଉଛି, ସେ ଆଉ ଫେରିବ ନାହିଁ । ତୁମେ ମିଥ୍ୟାବାଦୀ କିଶା ! ତୁମେ ଭଣ୍ଡ ! ତୁମେ ମିଥ୍ୟାଗର୍ବୀ ! ମୁଗ୍ଧା ମଧୁମତ୍ତାକୁ ତୁମେ ମିଥ୍ୟା କହୁଛ !"

ଉପକ ଝଡ଼ ପରି ସେଠୁ ଉଠି ଚାଲିଗଲେ ।

ପଶ୍ଚିମ ଦିଗ୍‌ବଳୟରେ ଜ୍ୟୋତ୍ସ୍ନାଲୋକ ଧୀରେ ଧୀରେ ନିଭି ଆସୁଥିଲା । ଲଜ୍ୟାବତୀ ଉଷାର ରାଗରଞ୍ଜିତ କପୋଳ ଉପରେ ଧୀରେ ଧୀରେ ପଡ଼ି ଆସୁଥିଲା କୁଜ୍‌ଝଟିକାର ଅବଗୁଣ୍ଠନ । ଅଶୋକ କୁଞ୍ଜର ପତ୍ର ଗହଳରେ ପ୍ରଭାତର ପକ୍ଷୀମାନଙ୍କର କଣ୍ଠରେ ଫୁଟି ଉଠିଥିଲା ବୈତାଳିକର ଗାନ ।

କାଶୀ ମୂଢ଼ ପରି ଚାହିଁ ଦେଖୁଥିଲେ···ଉପଗୁପ୍ତ କ୍ଷିପ୍ର ପରି ଦଣ୍ଡ, କମଣ୍ଡଳୁ ଉଦ୍ୟାନରେ ଫିଙ୍ଗି ଦେଇ, ଚୀବରରେ ଦେହ ଆବରଣ କରି, ଆଜୀବ୍ୟସଂହତ ଛାଡ଼ି ବାହାରି ଯାଉଥିଲେ, ଚମ୍ପାର ରାଜପଥରେ ।



**ବିଶେଷ ଦ୍ରଷ୍ଟବ୍ୟ :—**

ଏହି ଗଳ୍ପଟି "ମଧୁମତୀର ଅଭିସାର" ନାମରେ ମାସିକ 'ଝଙ୍କାର' ଅଷ୍ଟମ ବର୍ଷ, ଷଷ୍ଠ ସଂଖ୍ୟା, କନ୍ୟା ୧୩୬୩, ( ଇଂରାଜୀ ୧୯୫୬ ମସିହା ସେପ୍ଟେମ୍ବର ) ରେ ପ୍ରକାଶିତ ହୋଇଥିଲା । କିନ୍ତୁ ଲେଖକ ମହୋଦୟଙ୍କର ନିର୍ଦ୍ଦେଶ ଅନୁଯାୟୀ ଏଠାରେ ଉକ୍ତ ଗଳ୍ପର ନାମ "ମଧୁମତୀର ସ୍ୱପ୍ନ" ରଖା ଯାଇଛି ।

ସଂକଳକ

ଗୋପୀନାଥ ମହାନ୍ତି

# ଯଜ୍ଞ-ଆହୁତି

ସରକାର ଲୋକ ଆସିଛନ୍ତି । ଏହି ଯାହାଙ୍କୁ କନ୍ଧ ପରଜା ସର୍ବେ ଦେଶିଆ ଲୋକ କହନ୍ତି ଅଧିକାରୀ । ଜଙ୍ଘ ଅଧଟାକେ ମାଟିଆହୋଇ ଖଣ୍ଡେ ମୁଣା ବେଢ଼ିଇଛନ୍ତି ଅଗଜଣକ । ତା' ଉପରେ ଡୋରିଆ ହୋଇ ଖଣ୍ଡେ ଅଧା କାମିଜ୍ । ଆଖିରେ ପରଚକ୍ଷୁ । ମୁଣ୍ଡରେ 'ଟୋପି' । କାଳିଆହୋଇ ଡ଼ୁକା ହୋଇ ଡେଙ୍ଗାହୋଇ ଡେଣ୍ଡିଆ ଲୋକ, ଦଉଡ଼ର ଝାଳ ବୋହିଯାଉଛି । ସେହି ଜଣକ ଅଧିକାରୀ ନିଶ୍ଚୟ । ଆଉ ପଛଅଡ଼େ ଜମାନ ବାବୁ । ସେ ଏଡ଼େ ଖରାରେ ବି ଗୋଡ଼ରୁ ବେକଯାକେ ଜଙ୍ଘିଆ ଆଉ କୋଟ ଗଳେଇଛନ୍ତି ମଇଳା ଖଦଡ଼ର, କାନରେ ସୁନା ନୋଳି, ମୁଣ୍ଡରେ ମସ୍ତ ଧୋବ ପଗଡ଼ି । ମୁଛ ରଖିଛି । ଗଣ୍ଠି ଗଣ୍ଠିକିଆ ପାଅଁଶ ବାଡ଼ି ଧରିଛି । କିନ୍ତୁ ତାଠିଁ ସବୁଠୁଁ ବେଶି ଆକର୍ଷଣର ବସ୍ତୁ ତାର ନାଲି 'ଢ଼ବାଲ୍'ଟା । ସେଇଟା ପଇତାପରି ଛାତିଉପରେ ପଡ଼ିଛି, ଆଉ ସେଥିରେ ଚକଚକ ଦିଶୁଛି ପିତଳର ଚକତିଟା, ସେଥିରେ କଣ ସବୁ ଅକ୍ଷରରେ ଲେଖା ହୋଇଛି—ସରକାରୀ ଅର୍ଡ଼ର ନିଶ୍ଚୟ ।

ହାଟରେ ଚହଲ ପଡ଼ିଗଲା । ସଂଧ୍ୟା ବେଳ । ସିଂପୁର ମୁଠାରେ ମାଝିଗୁଡ଼ା ହାଟ । କୋଟେଶ ଗଡ଼ ପର୍ବତ ଗୋଲେଇ ବୁଲିଛି । ସେହି ପାହାଡ଼ ତଳରୁ ବହଳ ହୋଇ ତୋଟାମାଳ ଲଗି ରହିଛି । ମଝିରେ ମଝିରେ ତାଂଷଭୂଇଁ ଗା । ଠିକଏ ବାଟରେ ମାଝିଗୁଡ଼ା ଗାଁ । ତେଲୁଗୁ ଦେଶୀୟମାନେ ବେପାରକରି ଆସି ଏଠି ପେଶୁଜାଗା ଦେଖି ଗୋଟିଏ ଗୋଟିଏ ଘର କରୁ କରୁ କେବେ ଏ ଗାଁ ବଢ଼ି ଉଠିଥିଲା । ବର୍ତ୍ତମାନ ଏକ ପ୍ରତିଷ୍ଠିତ ଗାଁ, ଦେଢ଼ ଶହ ଘର । କେବଳ କେଇଜଣ ବଡ଼ ବଡ଼ ସାହୁକାରଙ୍କ ଘର, ଖୋନାବାଡ଼ି, ବଗିଚା; ଆଉ ଆର ସାହିରେ ତାଙ୍କ କନ୍ଧ ମୂଲିଆମାନେ, ଆଉ ଧଡ଼ସା, ଖତରା ଖାତକ ପଲପଲ—ଯିଏ ଅଟେଇ ବଣ ହାଣି, ମାଟି ତାଡ଼ି ଏ ତାଷ ଉପ-ତ୍ୟକାଟାକୁ ତେନାଏ ତେନାଏ କରି ସୃଷ୍ଟି କରିଥିଲେ, ଏଇ ମେଧୁଆ ଅମ୍ବତୋଟା, କମଳାତୋଟା ଆଉ ଅନ୍ୟାନ୍ୟ ଗଛ ବୁଟୁଛ ରୋପିଥିଲେ; ଏପରି କି ହାଟତଳେ ଏଇ ଯେଉଁ ପାଞ୍ଚବାଟି ଆକାରରେ ପ୍ରକାଣ୍ଡ ପୋଖରୀ ହୋଇଛି, କେଉଁଠି ଖୋଳି କେଉଁଠି ଅବା ବନ୍ଧ ବାନ୍ଧି ତାକୁ ତିଆରି କରିଥିଲେ, ସବୁ କରି ଧରି ଖାଲି ଧାନ ରୁଣରେ ରୁଣରେ ସର୍ବସ୍ୱାନ୍ତ ହୋଇ ଏହି ସାହୁକାରଙ୍କ ହାତକୁ ଟେକି ଦେଇଥିଲେ ଏସବୁ ।

ବହୁତ ଦୂରରୁ ଦୂରରୁ ଏ ହାଟକୁ ଲୋକ ଆସିଛନ୍ତି । ଶୀତଦିନଅଁ ହାଟ, ଖୁବ୍ ବଡ ହାଟ ନିମ୍ୟମଗିରି ପର୍ବତ ଉପରୁ ଡଙ୍ଗରିଆ କନ୍ଧମାନେ କଦଳୀ ଆଉ କମଳାଲେମ୍ବୁ ଆଣିଛନ୍ତି । ସେହି ପର୍ବତପାକ ତାଙ୍କର ତୋଟା ଓ କ୍ଷେତ । ସୁଆଁ, ଅଳସି, ଡଙ୍ଗର ଧାନ, ହରଡ଼, କାଡ଼ା ନାନା ପଦାର୍ଥ ଆସିଛି । ଅଣ୍ଟାରେ ତୋର କୌପୁନୀ । ସେଥିରେ ଦିଟା ବଡ଼ ବଡ଼ ଝୁମ୍ପା । କାଖ ଉପରେ ନୋଳକ । ଦି ନାକପୁଡ଼ା ମଝିଦାଣ୍ଡା ଫୋଡ଼ ହୋଇ ସେଥିରେ ଦି ଇଞ୍ଚ ଲମ୍ବା

ପିତ୍ତଳକାଠି । କାନଯାକ ପିତ୍ତଳ ଫାସିଆରେ ସତେ କି ସିଲେଇ ହୋଇଛୁ । ମୁଣ୍ଡରେ ଖୋସା ଓ ତହିଁରେ ପାନିଆ, ହାତରେ ବାଲା, ବେକରେ ବଦ୍ଧୁତ ମାଳ, ହୃଷ୍ଟପୁଷ୍ଟ ପୁରୁଷ । ତଂଗ୍ରିଆ ସ୍ତ୍ରୀ ଲୋକ ଆସି-ଛନ୍ତି । ଅଣ୍ଟା ଉପରକୁ ଫୁଙ୍ଗା ଦେହ । ଗ୍ଲାଡି ଯ କ ସରୁସରୁ କଳା ମାଳି, ରଙ୍ଗ ମାଳି, କେତେ କାଚର, କେତେ କାଠର । ତା' ଛଡ଼ା ତ ତଳ-ଦେଶର କାନ୍ଧ ଓ ଓଡ଼ିଆ, ତେଲୁଗୁଭାଷୀ ଲୋକେ, ସାହୁକାର, ଖମାର, ସମସ୍ତେ ହାଟକୁ ଆସିଛନ୍ତି । କିଏ କିଣିବାକୁ, ବିକିବାକୁ, କିଏ ଅବା ଖାଲି ବୁଲିବାକୁ । ହାଟଯାକ ହାଟର ଧୋ' ଧା' । ସରକାରି ଲୋକଙ୍କୁ ଦେଖି ହୋ' ହୋଇ ଉଠିଲେ ଲୋକେ । ଅବଶ୍ୟ ଏଇ ଖୋଲ ଭିତରକୁ ସରକାରି ଲୋକ ଆସିବା ନୂଆ ନୁହେଁ । ହାଟପାଳି କି ହାଟପାଳି ଜମାନ୍‌ମାନେ ଆସନ୍ତି । ନାଲି ପଗଡ଼ିଆ ପୁଲିସ । ସାବୁଜା ପୋଷାକ ପିନ୍ଧ 'ଫାରେଷ୍ଟ ଗାରଡ଼,' ଗେରୁଆ ପଗଡ଼ି ଭିଡ଼ି ସାଲୁଟ୍ । ତାଙ୍କୁ ଦେଖି ଦେହସହା ହୋଇଗଲେଣି । କିନ୍ତୁ ଏ ଟୋପିପିନ୍ଧା ଅଧିକାରୀ ପୁଣି ତା' ପଛେ ପଛେ ହୁଦା ଲଗାଇ ଜମାନ୍ । ନ ଜାଣିବା ଲୋକେ, ପିଲାଏ, ମାଇପି ଲୋକେ କେହି କେହି ସେ ଜମାନକୁ ହିଁ ବଡ଼ ଅଧିକାରୀ ଭାବି ତା' ପାଖକୁ ଠେଲାଠେଲି ହୋଇ ଆସିଲେ । ଆଉ ଥୋକେ ଗୁହାଁଲେ ସେ ଅଧିକାରୀକୁ । ଜାଣିବା ଲୋକେ ବଡ଼ବଡ଼ମାନେ କୁମୁଟି ସାହୁକାର, ଓଡ଼ିଆ ସାହୁକାରମାନେ ଦୋକାନ ଛାଡ଼ି ଆସି ବେକ ଭାଙ୍ଗି ସଳଖେଇ ଦଣ୍ଡବତ ହୋଇ ସ୍ତୁତି କଲେ—

"ତମର ଶରଣଂ ତମର ଶରଣଂ"
"ଦଣ୍ଡ ଦେଣ୍ଡେ ଦଣ୍ଡ ଦେଣ୍ଡେ"
"ମହାପ୍ରଭୁ, ତମର ପାଦୁକା ଶୀତଳ ଥାଉ ।"

ସାହୁକାର ଆସିବେ ତ, କିଏ ଜାଣେ କେଉଁ ଅଧିକାରୀ ! ହେଇ ଯେଉଁମାନେ ସାନ ସାନ ମାଣ ବାହାର କରି ଧାନ ମାଣ୍ଡିଆ

ବିକୁଥିଲେ, ସେମାନେ ସେ ମାଣଗୁଡ଼ିକୁ ଗର୍ଘ୍ୟଭିତରେ ଗେଞ୍ଜି ଦେଇ ଲୁଚେଇ ଦେଇ ସାରିଲେଣି । ଲୁଗା ଦୋକାନରେ ଖାତାପତ୍ର ଏଣ୍ଟୁ ସେପଟୁ ହେଲଣି । ବରଗଛ ତଳେ ହାଟର ପୂର୍ବପଟେ ପ୍ରକାଶ୍ୟରେ ରନ୍ଧା ମଦ ବିକ୍ରି ଚାଲିଥିଲା, ଖବର ପହଞ୍ଚିଗଲାଣି ଯେ ବାଟକାଟି ମଦ ଭଣ୍ଡାରକ ବାହୁଙ୍ଗିରେ ବୋହି ଲୋକ ଚାଲିଗଲେଣି । ସତେ କି ଏ ହାଟସିନ ବକାଳି ଚାଲିଯାଉଛି । ଦେୟାଣ୍ଟି ଚରିତ୍ର । କିଏ ଜାଣେ ଏ କେଉଁ ପ୍ରକାର ଅଧିକାରୀ । ଦଳେ ଆସନ୍ତି, ବିକ୍ରି ଉପରେ ଟିକସ ପକାନ୍ତି । କିଏ ଆସେ ଧୂଆଁପତ୍ର ଉପରେ ପାନ୍ତୁ ପକାଏ ; କିଏ ଆସେ, ପଚାରେ—ଏଇଠାରେ ଲାଇସନ କରିଛ ? ସେଇଠାରେ ଲାଇସନ କରିଛ ? କିଏ କହେ—ଚାନ୍ଦା ଦିଅ ! ଯକ୍ଷ୍ମାରୋଗୀଙ୍କ ପେଇଁ ଚିକିତ୍ସା କରାଯିବ । କିଏ କହେ—ପ୍ରସୂତିଙ୍କ ପେଇଁ ବ୍ୟବସ୍ଥା କରାହେବ, କିଏ ବା ଦେଖାଏ ଟଙ୍କା ଗଛର ଛବି । ଆଜି ସରକାର ସଞ୍ଚୟ ଯୋଜନାରେ ଟଙ୍କା ପକାଅ । ପାଞ୍ଚବର୍ଷ ପରେ ସେ ଟଙ୍କା ସତୁରିକୁସତ ଫଳ ଧରିଥିବ ଦେଖିବ । ଆଉ ସବୁଠୁଁ ଭଲ ସେଇଅଙ୍କ, ଯେ ଦୋଷ ଉଣ୍ଡିଥାନ୍ତି, ଚଢ଼ା ଭାଉରେ ବିକାବାର ଦେଖିଲେ କି ଠକୁଥିବାର ଦେଖିଲେ ମନକଲେ କେସ୍ ବି କରିଦେଇ ପାରନ୍ତି । ଆଇନ୍ ତ ବହୁତ, କେତେବେଳେ କେଉଁ ଆଇନ୍ ହେଉଛି ସେ କଥା ସହଜେ ଜାଣିବା ସମ୍ଭବ ନୁହେଁ । ତେଣୁ ଏତେ ଲେଣ୍ଠାରେ କଣ ଅଛି ? ଆଗରୁ ତାଙ୍କଠି ଚାହାଁ ପଡ଼ିଲେ ଭଲ । ତା' ଛଡ଼ା, ନିର୍ବାହ ଅଧିକାରୀ ବି ତ ବେଳେ ବେଳେ ଆସି ପହଞ୍ଚି ଯାଆନ୍ତି; ଯାହାଙ୍କର ନଖ ଦାନ୍ତ ନ ଥାଏ, ସେମାନେ ଦେବାପାଇଁ ଆସନ୍ତି ।

ନେବାପାଇଁ ନୁହେଁ । କିଏ ଆସେ, କହେ—ଆମ୍ଭଠି ଭଲ ବିହନ ଅଛି, ସରକାର ପଠେଇଛନ୍ତି ଶସ୍ତାରେ ଦବୁଁ, କଣ !

କିଏ କହେ—କଳ ଲଙ୍ଗଳ କିଣ ! କିଏ ଯାଚେ-ଅନ୍ୟ କେଉଁ ଯନ୍ତ୍ର, କିଏ ଅବା କହେ, ଟଙ୍କେ ଟଙ୍କେ ଦିଅ, ତମପେଇଁ ଏମିତି ସୋସାଇଟି ଗଢ଼ିଦେବ ଯେ ତେମେ ସେଇଥିରୁ ସୁବିଧା ଦରରେ ଋଣ ନେଇପାରିବ । ଏମିତି କେତେ ଅଧିକାରୀ ।

ଡମ୍ବ ଜାତିର ଲୋକ ଦଶପନ୍ଦର ଜଣ ଗୋରୁ ଓ ଗୋରୁଗାଲ ବିକୁଥିଲେ । ପାଖକୁ ଆସି ସେମାନେ ଲଗେଇଲେଣି "ମାହାପୁରୁ, ଆମେ ହରିଜନ, ଆମପେଇଁ କ'ଣ ଆଣିଚ ଦେଇଯା ।' ଆମଭିତରେ ପୁରୁଣା ଦାଗୀ ବି ଅଛନ୍ତି, ସରକାର ପରା ଦାଗୀମାନଙ୍କୁ ବାଛି ବାଛି ତାଙ୍କପେଇଁ କଣ ଟଙ୍କାପଇସା ଦେଉଛନ୍ତି-ଘର ତୋଳିବେ, ବେଉସା କରିବେ ବୋଲି ? ହେଇ ଦେଖ, ଯେ ଜଣକ ଦାଗୀ, ଆଉ ଯେ ଜଣକ ବି । କିଛି କିଛି ଟଙ୍କା ମିଳିଲେ ଲୁଗାବୁଣା କାମକୁ ସାହାଯ୍ୟ ହନ୍ତା । ଆମେ ସମସ୍ତେ ବୁଣକାର ।"

ନ ହେଲେ ଏଇ କଣ ସେଇ ଅଧିକାରୀ—ଯେଉଁମାନେ ଗାଁ ଗାଁ କେ କୂଅ, ପୋଖରୀ, ଇସ୍କୁଲ, ସଡ଼କ ଇତ୍ୟାଦିପାଇଁ ଟଙ୍କା ଦିଅନ୍ତି ? କିଏ କହିପାରେ ? ଏମିତି ଭାବି ସମତଳର ଚତୁର ଲୋକେ ତାଙ୍କୁ ଘେରି ଗଲେଣି ଆଉ ଆରମ୍ଭ କଲେଣି, "ଆମ ଗାଁରେ କୂଅ ନାହିଁ । ଭାରି ଜଳ କଷ୍ଟ । ଖଣ୍ଡେ କୂଅ ଆଜ୍ଞା ହେଉ ।" "ଆମ ଗାଁରେ ଗୋଟାଏ ଇସ୍କୁଲ ଦିଅ ଆଜ୍ଞା ।"

ସେ କିଛି କହୁ ନାହାନ୍ତି । ବରଗଛମୂଳେ ଠିଆ ହୋଇଛନ୍ତି ଅଣ୍ଟାରେ ହାତଦେଇ । ଲୋକଙ୍କୁ ଅନାଉଛନ୍ତି । ଛୋଟିଆ ମଣିଷଟିଏ ପାଲକୁଣ୍ଡା ସୁରନାରାୟଣ ପଟ୍ଟନାଇକ, ଶିଷ୍ଟି କରଣମ୍, ଘରେ କହେ ପାଲକୁଣ୍ଡା ଶିଷ୍ଟି କରଣମ୍ ଭାଷା, "ଭୁଟି (ଶିକା) ଉପରେ ବାଉ (ଠେକା) ଅଛି ।" ବଡ଼ ଦଡ଼ ଜଣ । ଏମିତି ପେଟିଶଣ

ଅର୍ଥାତ୍ ଦରଖାସ୍ତ ଲେଖି କନ୍ଧଙ୍କଠୁଁ ଟିପ ନେଇ ପଠେଇ ଦବି ଯେ ଅନହୁତ ଇନ୍‌କାଇର ପଠେଇ ଆସିବ ସଧା ରାଜଧାନୀରୁ, ହୁଲ୍ ହୁଲ୍ ଲାଗିଯିବ । ସେ ଅଧିକାରୀ ଆଉ ଜମାନଙ୍କ ଗୋଡ଼ରୁ ମୁଣ୍ଡଯାଏ ମୁଣ୍ଡରୁ ଗୋଡ଼ଯାଏ ବାରମ୍ବାର ଅନାଉଛି । କହିଦେଲା "ଆପଣ କୁ ଡିପାର୍ଟମେଣ୍ଟ ଆଜ୍ଞା ? ଧୂଆଁପତ୍ର ? ନା ସେଲଟେକ୍ସ ନା କଣ୍ଟ୍ରୋଲ ? ନା କାସ ବଳକା ପାଇଁ ଆସିଚ କି ? ସାବୁନ ? ବିଡ଼ି ? ଗୁଡ଼ାଖୁ ? ଘିଅ ? ଦୋଷଦେଲେ କୋପ କରନା କ୍ଷମା କରନ୍ତୁ ଆପଣ । ତମେ କିଏ ଆମେ କୋ' ପ୍ରକାରେ ଜାଣିମୁ ?"

ଜମାନ ଦ'ଖିଲ୍ ପକାଇ ଦେଇ ଦ ଗାଲ ଠୋଲେଇଦେଇ ସଡେ କି ପାକୁଳି କରୁଛି । ଅଧିକାରୀ ଅନେଇ ରହିଛନ୍ତି ତାଙ୍କ ସାମନାକୁ । ଜକାଜକି ହୋଇ ପେଲାପେଲି ହୋଇ ଧାଡ଼ି ପଛରେ ଧାଡ଼ି ହୋଇ ସ୍ତ୍ରୀ ପୁରୁଷ ତା ଆଗରେ ଠିଆ ହୋଇଛନ୍ତି । ଫୁର୍ ଫୁରୁ ଉଡ଼ୁଛି ମୁଣ୍ଡବାଳ ବୋତଙ୍ଗ ଲେଖା, କିଏ ବା ଜୁଡ଼ା ପକାଇଛି, କପାଳଯାକ ଦ ଜଡ଼ାତେଲ ଚକାଚକ କରୁଛି, ଖୋଲା ଦେହ, ଅଣ୍ଟାରେ ଡୋର କୌପୁନୀ । ଏହିପରି କଳ ପୁରୁଷମାନେ, ଫୁଙ୍ଗା ଦେହ, ଛାତି ଉପରେ ଗିଲଟି ଗୋଲ ବଳା ଆଉ ବହଳ ହୋଇ ମାଳି । ବାହାଯାକ ଖଡ଼ୁ । କାହାର ମୁହଁ ଦେହ ଖାଲି ଚିତାକୁଟା ହୋଇଛି । କେତେ ମା ଜାକି ଧରିଛନ୍ତି ଆପଣା ଆପଣା ଛୁଆମାନଙ୍କୁ ନିଜ ଦେହ ସହିତ ବାନ୍ଧି ଦେଇଛନ୍ତି । ଅଣ୍ଟା ତଳକୁ ଅଣଓସାର ହୋଇ ଖଣ୍ଡେ ବେଢ଼ା ହୋଇଛି । ଗୋଡ଼ରେ ଗିଲ୍‌ଟିର ବଙ୍କା ବଙ୍କା ଖଡ଼ୁ । ଏମିତି କଳ ସ୍ତ୍ରୀ ଲୋକମାନେ, ଆଉ ତା' ଛଡ଼ା ଅନ୍ୟ ସାଧାରଣ ଲୋକେ । ସେମାନେ ତାଙ୍କର କଥାକୁ ଅପେକ୍ଷା କରି ଠିଆ ହୋଇଛନ୍ତି । ଯେପରି କି କେଉଁ କୋଠିନିଧି ସେ ତାଙ୍କୁ ଅଜାଡ଼ି ଦେଇଯିବେ । ସାମନାରେ ସରଳ ଲୋକ ଆଉ

ଚହ୍ଲୁର ଲୋକ ମିଶାମିଶି, ଦରଦ ଆଉ ସାହୁକାର । ଜଲଜଲ ଧଷିଲା ସେହି ଦରଦମାନଙ୍କ ଘରକରଣା, ଘାସ-ଛୁଆଣି ଧାଡ଼ି ଧାଡ଼ିକା ଘାନ କୁଡ଼ିଆ, ତା'ର ଗୁଳ ପଦାକୁ ନଇଁ ଆସି ଭୂଇଁକି ଦ'ହାତ ଛୁଡ଼ିଛି । ବର୍ଷକ ବାରମାସରୁ ଧାନ ମାଣ୍ଡିଆ ଛ ମାସ ଭେଟେଇଦେଲେ ଆଉ ଛ ମାସଟା ଆମ୍ବଟାକୁଆ କସ, ତନ୍ତୁଳି ମଞ୍ଜି, ଶଳପ ଗଛ ଭିତରର ଧୂଳି, ବଣର ଅନାବନା ଶାଗ ଡାଳ, କଳା ଚେର । ହାତୀ ଖାଏ ଫସଲ । ବାଘ ଖାଏ ମଣିଷ । ବେପାରି ସାହୁକାର ନାନା ଫନ୍ଦିରେ ନାନା ଉପାୟରେ ଦେହରୁ ରକ୍ତ ଶୋଷି ନେଲାପରେ ଯାହାଙ୍କର କମେଇ ଝୁଣିଖାଏ । ଅଧିକାଂଶ ସେହି ଜନ ଗୋଷ୍ଠୀଙ୍କୁ ଗୁହିଁନେହି ଡରଡର ହୋଇ ଭାଙ୍ଗିଗଲେ । ଆଜି ଜୋଲୁବୁହା ନାହିଁ । ଧରିମାରି ନେଉଠେବେଗାରି ନାହିଁ ବୋଲି ଏମାନେ ନ ପଳେଇ ବୁଦାରେ ନ ଲୁଚି ସାମନାରେ ଆସି ଠିଆ ହେଉଛନ୍ତି । ସ୍ୱାଧୀନତା ଆସିଲା । ଏମାନଙ୍କ କର୍ମ ସଲଖିଛୁ ଠିକଣା । କିନ୍ତୁ ଆହୁରି କେତେକଥା କରିବାକୁ ବାକି ଅଛି ଯେ ! ସବୁଠି ଏକାପରି ଏ ମୁହଁର ଠାଣି । ସେହି ଆଶା, ସେହି କୁତୂହଳ, ଯେ କଣ ଆଣିଛୁ ଆମ ପାଇଁ ? କଣ ପାରିବା ଆମେ ଯାଠୁ ?

ତାଙ୍କୁ ସେହି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ । ଭାଷାରେ ନୁହେଁ, କାର୍ଯ୍ୟରେ ।

ଦଶମିନଟ୍ ଗଲାଣି ଏମିତି ମୁହାଁମୁହିଁ ଠିଆ ହୋଇ, ସେ ଆଉ ଅପେକ୍ଷା ନ କରେଇ ସଂକ୍ଷେପରେ ନିଜର ଓ ନିଜ ଉଦ୍ଦେଶର ପରିଚୟ ବର୍ଣ୍ଣନା କଲେ । ଲୋକେ ତୁନି ହୋଇ ଶୁଣୁଥାନ୍ତି, ଯେପରି କି କଥାଗୁଡ଼ାକ ଗିଳିପକାଉଥାନ୍ତି । ମଝିରେ ମଝିରେ ଠୁପୁରୁଠାପୁରୁ ହେଉହେଉ ମନ୍ତବ୍ୟର ଜୁଆର ଛୁଟେ । ଶୁଣିଶୁଣି କାହାମୁହଁ

ଆଶାରେ ଝଲକୁଛି, କାହା ମୁହଁ କଳା ପଡ଼ୁଛି । ତାଙ୍କର ଚେହେରାଯୁ ଯେମିତ କୁହାକୋହ୍ନ ଲାଗିଛି ।

"ଏଇଟା ଶିଲକଟ୍ ।"

"ନାଇଁ ଏଇଟା ସୋଫ୍ରଟ୍ ।"

"ଏଇଟା ମେମ୍ବରଟ୍ ।"

"ତୁମେ ତୁଚ୍ଛା ମାହାଳିଆ କିଛି ଜାଣିନ ହେ । ଏଇଟା କମିନଟି ବଲକ୍ ଅଧିକାରୀ ।"

"ଯେ ହଉ ଅଧିକାରୀ ଲୋକ ତ, ଭଲ କଥା କହୁଛ ।"

ଭଲ କଥା ସେ କହୁଛନ୍ତି ସତରେ—ଯେ, ସବୁଲୋକ ଖାଇପିଇ ବଞ୍ଚିଲେ ସିନା ଭଲ । ଜଣେ ଖାଇପିଇ ନାଲଧର ମଧୁର ଶୀକାର କରି ବୁଲୁଥିବ ଆଉ ଗୁଲ୍ଲା ଗାଁ ଲୋକ ଦୁଖ କାକୁତିରେ ଗୁଲ୍ ଗୁଲ୍ଲା (ଅର୍ଥାତ୍ ବିକଳ) ହୋଇ ଯାଉଥିବେ—ସେଇଟା କାହାର ଭଲ ?

(ହୋ ହୋ—ଭଲକଥା, ଜେହୁ କର୍ତ୍ତା, ଲୋକସାମ୍ମ, ବାଂସା ବାଂସା, ସଂବାଦ)

ଲୋକଙ୍କୁ କହେଇ କେହି ବେଶି ଧନ ରଖିପାରିବ ନାହିଁ । ଯାହା ହବାର ତା ହେଇ ଯାଇଛି ଯଉ, ଏଣିକି ଲୋକଙ୍କଠୁଁ ହରବରକରି ଧନ ଓଟାରିବା, ଭୂମି ଓଟାରିବା କାମ ସେତିକି ଥାଉ । ନଇଲେ ଲୋକେ ଓଲଟିବା ଆଗରୁ ଆମେ ଧରି ପକେଇବୁ, ସରକାର ଓଲଟିଲେ ଆଉ ରକ୍ଷା ନାହିଁ । ଏବେ ଟୋଟିଏ କଥା ଦେଖ, କେତେ ବେପାରି ମାପରେ ଗରିବଙ୍କ ଠକନ୍ତି । ବିକାଲାବେଳକୁ, ମୂଲ ଦେଲାବେଳକୁ ସାନ ମାଣରେ ଦେବେ, କିଣିଲାବେଳକୁ ବଡ଼ ମାଣରେ କାଟିବେ । ଥରକେ ପାଏ, ଲେଖାଁ ଠକିଲେ ପୁଟିକେ କେତେ ? ଗଉଣୀକେ କେତେ ? [ତା ସେର ବା

୪ଅଡ଼ା=୧ମାଣ । ୨୫ ମାଣ=୧ ପୁଟି । ୨୦ ମାଣ=୧ଗଉଣି]
ଏଇଟା କ'ଣ ଧର୍ମ ? ଏବେ ତ ଓଳିଏ ମୂଲ ଲାଗିବୁ କହି ତାଙ୍କୁ
ନେଇ ଧାନେ ଖଟେଇ ନେଇ ମୂଲ ଦେଲାବେଳକୁ ଅଡ଼ାଏ,
ତହିଁରେ ପୁଣ ଅଡ଼ାରେ ପାଏ ଲେଖା ଧପେଇଲେ ରଇତ ଖାଇବ
କ'ଣ ? ଏବେ ତ ମାଣେ ଧାନ ମାଣ୍ଡିଆ କରଜ ନେଲେ ବର୍ଷକୁ
କାଲନ୍ତର ପକେଇ ଦଉଚ ତିନିମାଣ ମଧ୍ୟ । ଫେର୍ ସୁଧ ମୂଳକର
୪ମାଣ ମାପି ନେଲା ବେଳକୁ ମାଣଟାକୁ ଯଦି ପାଏ ଅଧିକା ବଡ଼
କରି ଗଢ଼େଇ ମାପିବ, ତେବେ ମାଣେ ଧାନ ମାଣ୍ଡିଆ କରଜ
ଦେଇଥିଲେ ରଇତଠୁଁ ତୁମେ ନେଇଯିବ ୬ମାଣ ତେବେ ଆଉ
ତା'ଠି ରହିବ କ'ଣ, ସେ କୋଉପରି ବଂଚିବ ?

ଦଳ ଭିଡ଼ଭିଡରେ ଭାରି କଳରବ । 'ହୋଇହୋଇ ସଉସଉ' ଚିତ୍କାରର ଘୋ' ଘା' ଭିତରେ "ନାଲି ମହାପ୍ରଭୁ, ଚୁଚ୍ଛାଟା ମହାପ୍ରଭୁ, ଆମେ ସେମିତି ଠକୁ ନାଲି ମହାପ୍ରଭୁ" ଏ ସବୁ ଅପିଉ କେଉଁଠି ହଜି ଯାଉଚ୍ଛି । ବଡ଼ବଡ଼ ସାହୁକାର ଯାଇପାରୁ ନାହାନ୍ତି କିନ୍ତୁ ସାନସାନ ମୁଣ୍ଡ ବୋଝ ଅଣାଇଥିବା ମାଇପେ, କୁମୁଟିଆଣୀଙ୍କ ଟେଲିଆଣୀମାନେ ପଛରୁ ପଛରୁ ଖସିଲେଣି ଗୋଟିଏ ଗୋଟିଏ ହୋଇ ।

ସରକାରି ଲୋକ କହିଯାଉଛନ୍ତି "ଏ ସରକାରଟା କାହାର ବୋଲି ତୁମେ ଭାବୁଚ ? ସରକାରଟା ଏ ଦେଶର ଲୋକଙ୍କର । ବେଶି ଲୋକ ଯାହାକୁ ବାଛି ହୋଇ-ପଠେଇବେ ସେଇମାନେ ଏ ଦେଶପାଇଁ ଶୃଙ୍ଖଳା ରଖିଚନ୍ତି ପୁଣି ସେଇମାନେ ଏ ଦେଶପାଇଁ ଆଇନ ତିଆରି କରୁଛନ୍ତି । ବେଶି ଲୋକ କିଏ, କଣ ସାହୁକାର ନା ରଇତ ? ଗାଁ ଗୋଟାକରେ ଶହେ ଘର ରଇତ ଥିଲେ ଗୋଟେ ଘର ସାହୁକାର ଥିବ କି ନାହିଁ । ବେଶି ଲୋକର ହାତରେ କ୍ଷମତା

ଅଛି ବୋଇଲେ ରଇତଲୋକ ପାଖରେ ବେଶି କ୍ଷମତା ଥିବାର କଥା । ଆଜି ସେମାନେ ତମକୁ ସହୁଚନ୍ତି, କାଲି ସେମାନେ ମନେକଲେ ଅବସ୍ଥା ଭିନେ ରକମ ହବ । ବେଶି ଲୋକ ଉପରେ ଘୋଡ଼ାଚଢ଼ି ଠେଙ୍ଗା ଆଉ ତାଙ୍କର ବଳରେ କେତେଦିନ କେଇଟା ସାହୁକାର ରହି ପାରିବେ ? ହଁ, ରହି ପାରିବେ ଭଲ ପାଇଟି କଲେ, ଗରିବ ଧନୀ ଭେଦ ଉଠିଯିବାର ଭଲ । ତମେ ସାହୁକାରମାନେ ଯଦି ଅଧର୍ମ ଅନୀତି ଛାଡ଼ିବ, ମାପରେ ଠକିବ ନାହିଁ, ହାଡ଼ଭଙ୍ଗା କଳନ୍ତର ନେବ ନାହିଁ, ରଇତଠୁଁ ଜମି ଝିଙ୍କିବ ନାହିଁ, ସମସ୍ତଙ୍କ ସାଙ୍ଗରେ ବାଣ୍ଟିକୁଣ୍ଟି ଖାଇବ, ନ ଥିବା ଗରିବ ଲୋକଙ୍କୁ ଦେଉଥିବ, ପାଳୁଥିବ, ତୁମକୁ ସେମାନେ ଭାଇ ଭାଇ ବୋଲି କହି ମୁଣ୍ଡେ ମୁଣ୍ଡେଇ ନାଚୁଥିବେ ହୋ, ଏ ହିଂସା ଏ ରୋଷ କାହିଁ-ପାଇଁ ?”

ଆନନ୍ଦ ବଢ଼ୁଛି, ଉତ୍ସାହ ବଢ଼ୁଛି । କ'ଣ ଖୋଲ ଭିତରେ ଭଲ କଥା ଶୁଣୁଛି ମଣିଷ । ଲୋକେ କୁହାକୋହି ହେଉଛନ୍ତି,—ଛେଳି କୁକୁଡ଼ା କଦଳୀ କିଛି ମାଗୁନାହିଁ ଏ ଅଧିକାରୀ, ବେଠି କରିବାକୁ କହୁନାହିଁ, ଭଲ କଥା ତ କହୁଛି । ହେଇ ଦେଖ, ତାର ମୁହଁ ଆଖି କେମିତି ଛଳଛଳ ହେଇ ଉଠୁଛି । ଭଲଲୋକ, ରଇତପାଇଁ ତା ପ୍ରାଣଟା କାନ୍ଦୁଛି । ନଇଲେ ଏତେ ବିକଳ କାହିଁକି ହୁଅନ୍ତା ? ଶୁଣ ଶୁଣ ପାଟି କର ନାହିଁ, ସେ କହୁଛି ।

“ଆଇନ ଲଗେଇ ଦେଇ ମୁଁ ଧରିବି ନାହିଁ । ସେଇଟା ତ ସହଜ ବାଟ, ମନ କଲେ ହେଲା, ଦି ଧାଡ଼ି ଲେଖିଦେଲେ କେସୁ ହେବ, କୋର୍ଟ କଚେରି ଅଛି, ପୁଲିସି ଅଛନ୍ତି, ଜେଲ୍‌ଖାନା ବି ଅଛି, ତାର ଉଞ୍ଚା ଉଞ୍ଚା କାନ୍ଥ । କିନ୍ତୁ ଆଇନ ବାଟରେ ଲୋକଙ୍କୁ ଡରେଇ ହେବ ଯେନା, ତାଙ୍କ ହୃଦୟକୁ ତରଳେଇ ହେବ ନାହିଁ । ଆଇନକୁ

ଠକିବା ଲୋକ ଅନେକଙ୍କୁ ଠକିବ । ଜଣକ ପାଇଁ ଆଉ ଜଣକୁ ଦଣ୍ଡ ଦେଲେ, ଯେ ଦଣ୍ଡ ପାଇବ ସେ ଫେରିଆସି ଆଉ ଜଣକୁ ଅନ୍ୟାୟ କରୁଥିବ ମଲାଯାଏ । ମୁଁ କହୁଚି ତୁମେ ଏ କଥାଟା ବୁଝ । ତୁମର ପାପ ତୁମେ ନିଜେ ପଦାକୁ ଫୋପାଡ଼ି ଦେଇ ଶୁଦ୍ଧ ହୁଅ । ଯାହା ଯାହା ପରେ ଯାହା ଯାହା ପାଖରେ ଠକେଇ ମାଣ୍ଟି ଅଡ୍‌ଡା ସବୁ ଅଛି ତାକୁ ବାହାର କର, ତାକୁ ପଥରରେ ଛେଚ, ନିଆଁ ଜାଳି ତାକୁ ସେଥିରେ ପକାଅ । କହ ଆଜିଠୁ ପାପ ଗଲା, ସତ୍ୟ ଯୁଗ ଆସିଲା । ଆଣ, ଆଣ, ଆପଣା ଆପଣା ପାପର ଅସ୍ତ୍ର, ନିଜେ ବାହାର କରଦେଇ ହରିବୋଲ ଦିଅ ।"

ସତକୁ ସତ ଲାଗିଲେ ଧୋ'ଧା'—କେଡ଼େ ଚଞ୍ଚଳ ସତ୍ୟର ଧାସରେ ନିଆଁ ଲାଗେ, ଜଳିଯାଏ ସବୁ ଅନ୍ଧାର ! କେଡ଼େ ଚଞ୍ଚଳ ମଣିଷର ମନ ଗୋଟାଏ ଅବସ୍ଥା ପରିବର୍ତ୍ତେ ଆଉ ଗୋଟାଏ ଅବସ୍ଥାକୁ କଳ୍ପନା କରି ଆଦରି ନେଇପାରେ ! ସରକାରୀ ଅଧିକାରୀ ବରଗଛ ତଳେ ପଥର ଉପରେ ବସି ଯେପରିକି ଭବିଷ୍ୟତକୁ ଚାହିଁ ରହିଛନ୍ତି । ଆସୁଛି ସେ, ଆସୁଛି ଧାଇଁ ଧାଇଁକା । ସତ୍ୟ ଯୁଗ ଆସିବ, ମଣିଷର ମନ ବଦଳିବ । ପୁଣି ସ୍ନେହ ଶାନ୍ତି ମୈତ୍ରୀ ଭାଇପଣ କଅଁଳି ଉଠିବ, ସବୁ ମଣିଷ ଭାଇ ଭାଇ ।

ସତେ ଯେପରି କାନରେ ବାଜି ଯାଉଛି ଶାହ ଶବ୍ଦ କଣ୍ଠରେ ଆନନ୍ଦର ଚିତ୍କାର ।

"ଆମ ଗାଁରେ ଭୂମିହୀନ ହୋଇ କେହି ରହିବେ ନାହିଁ ।"

"ଆମ ଗାଁ ରେ ଗରିବ ହୋଇ କେହି ରହିବେ ନାହିଁ ।"

"ଆମ ଗାଁରେ ଠାପୁଆ, ନିକମା, ନିଷ୍ଠୁର, ଠାଉଠର ବୋଲି କେହି ରହିବେ ନାହିଁ ।"

ଅଛୁ ବୋଲିଲେ ରଇତଲୋକ ପାଖରେ ବେଶି କ୍ଷମତା ଥିବାର କଥା । ଆଜି ସେମାନେ ତୁମ୍ଭକୁ ସହିଚନ୍ତି, କାଲି ସେମାନେ ମନେକଲେ ଅବସ୍ଥା ଭିନେ ରକମ ହେବ । ବେଶି ଲୋକ ଉପରେ ଘୋଡ଼ାଚଢ଼ି ଥିଙ୍କା ଆଉ ତାଙ୍କର ବଳରେ କେତେଦିନ କେଇଟା ସାହୁକାର ରହି ପାରିବେ ? ହାଁ, ରହି ପାରିବେ ଭଲ ପାଇଟି କଲେ, ଗରିବ ଧନୀ ଭେଦ ଉଠି ଗଲେ ଭଲ । ତମେ ସାହୁକାରମାନେ ଯଦି ଅଧର୍ମ ଅନୀତି ଛାଡ଼ିବ, ମାପରେ ଠକିବ ନାହିଁ, ହାଡ଼ଭଙ୍ଗା କଳନ୍ତର ନେବ ନାହିଁ, ରଇତଠୁଁ ଜମି ଝିଙ୍କିବ ନାହିଁ, ସମସ୍ତଙ୍କ ସାଂଗେ ବାଣ୍ଟିକୁଣ୍ଟି ଖାଇବ, ନ ଥିବା ଗରିବ ଲୋକଙ୍କୁ ଦେଉଥିବ, ପାଳୁଥିବ, ତୁମ୍ଭକୁ ସେମାନେ ଭାଇ ଭାଇ ବୋଲି କହି ମୁଣ୍ଡେ ମୁଣ୍ଡେଇ ନାଚୁଥିବେ ହୋ, ଏ ହିଂସା ଏ ରକ୍ଷା କାହିଁ-ପାଇଁ ?”

ଆନନ୍ଦ ବଢ଼ୁଛି, ଉତ୍ସାହ ବଢ଼ୁଛି । କ’ଣ ଖୋଲି ଭିତରେ ଭଲ କଥା ଶୁଣୁଛି ମଣିଷ । ଲୋକେ କୁହାକୋହି ହେଉଛନ୍ତି,— ଛେଳି କୁକୁଡ଼ା କଦଳୀ କିଛି ମାଗୁନାହିଁ ଏ ଅଧିକାରୀ, ବେଠି କରିବାକୁ କହୁନାହିଁ, ଭଲ କଥା ତ କହୁଛି । ହେଇ ଦେଖ, ତାର ମୁହଁ ଆଖି କେମିତି ଛଳଛଳ ହେବ ଉଠୁଛି । ଭଲଲୋକ, ରଇତପାଇଁ ତା ପ୍ରାଣଟା କାନ୍ଦୁଛି । ନଇଲେ ଏଡ଼େ ବିକଳ କାହିଁକି ହୁଅନ୍ତା ? ଶୁଣ ଶୁଣ ପାଟି କର ନାହିଁ, ସେ କହୁଛି ।

“ଆଇନ ଲଗେଇ ଦେଇ ମୁଁ ଧରିବି ନାହିଁ । ସେଇଟା ତ ସହଜ ବାଟ, ମନ କଲେ ହେଲା, ଦି ଧାଡ଼ି ଲେଖିଦେଲେ କେସୁ ହେବ, କୋଠ କଚେରୀ ଅଛି, ପୁଲିସ ଅଛନ୍ତି, ଜେଲଖାନା ବି ଅଛି, ତାର ଉଆଁ ଉଆଁ କାନ୍ଦୁ । କିନ୍ତୁ ଆଇନ ବାଟରେ ଲୋକଙ୍କୁ ଡରେଇ ହେବ ସିନା, ତାଙ୍କ ହୃଦୟ ତରଳେଇ ହେବ ନାହିଁ । ଆଇନକୁ

ଠକିବା ଲୋକ ଅନେକଙ୍କୁ ଠକିବ । ଜଣକ ପାଇଁ ଆଉ ଜଣକୁ ଦଣ୍ଡ ଦେଲେ, ଯେ ଦଣ୍ଡ ପାଇବ ସେ ଫେରଅଟି ଆଉ ଜଣଙ୍କୁ ଅନ୍ୟାୟ କରୁଥିବ ମଲଯାଚକେ । ମୁଁ କହୁଚି ତୁମେ ଏ କଥାଟା ବୁଝ । ତୁମର ପାପ ତୁମେ ନିଜେ ପଣାକୁ ଘୋପାଡ଼ ଦେଇ ଶୁଦ୍ଧ ହୁଅ । ଯାହା ଯାହା ପଟେ ଯାହା ଯାହା ପାଖରେ ଠକେଇ ମାଣ୍ଡ ଅଡ଼ିଆ ସବୁ ଅଛୁ ତାକୁ ବାହାର କର, ତାକୁ ପଥରରେ ଛେଚ, ନିଆଁ ଜାଳି ତାକୁ ସେଥିରେ ପକାଅ । କହ ଆଜଠୁ ପାପ ଗଲା, ସତ୍ୟ ଯୁଗ ଆସିଲା । ଆସ, ଆସ, ଅପଣା ଅପଣା ପାପର ଅସ୍ତ୍ର, ନିଜେ ବାହାର କରିଦେଇ ହରିବୋଲ ଦିଅ ।"

ସତକୁ ସତ ଲାଗିଗଲା ଧୋ'ଧା'—କେଡ଼େ ଚଞ୍ଚଳ ସତ୍ୟର ଧାସରେ ନିଆଁ ଲାଗେ, ଜଳିଯାଏ ସବୁ ଅନ୍ଧାର ! କେଡ଼େ ଚଞ୍ଚଳ ମଣିଷର ମନ ଗୋଟାଏ ଅବସ୍ଥା ପରିବର୍ତ୍ତେ ଆଉ ଗୋଟାଏ ଅବସ୍ଥାକୁ କଳ୍ପନା କରି ଆଦରି ନେଇପାରେ ! ସଚେକାସ୍ତ ଅଧିକାଂଶ ବରଗଛ ତଳେ ପଥର ଉପରେ ବସି ଯୋପରିକା ଭବିଷ୍ୟତକୁ ଗୁହିଁ ରହିଛନ୍ତି । ଅସୁଛି ସେ, ଆସୁଛି ଧାଇଁ ଧାଇଁକା । ସତ୍ୟ ଯୁଗ ଆସିବ, ମଣିଷର ମନ ବଦଳିବ । ପୁଣି ସ୍ନେହ ଶାନ୍ତି ମୈତ୍ରୀ ଭାଇପଣ କଅଁଳି ଉଠିବ, ସବୁ ମଣିଷ ଭାଇ ଭାଇ ।

ସତେ ଯେପରି କାନରେ ବାଜି ଯାଉଛି ଶାହ୍ମ ଶବ୍ଦ କଣ୍ଠରେ ଆନନ୍ଦର ଚିତ୍କାର ।

"ଆମ ଗାଁରେ ଭୂମିହୀନ ହୋଇ କେହି ରହିବେ ନାହିଁ ।"

"ଆମ ଗାଁ ରେ ଗରିବ ହୋଇ କେହି ରହିବେ ନାହିଁ ।"

"ଆମ ଗାଁରେ ଠାପୁଅ, ନିକମା, ନିଷ୍ଠୁର, ଝାଉଁଟିଆ ବୋଲି କେହି ରହିବେ ନାହିଁ ।"

ତେଣୁ ତାଙ୍କ ନଘାରୁ ଲୁଚେଇ ରଖିବା ସମ୍ଭବ ନୁହେଁ । ମାଂଶ ସବୁ ଅଯୁଛି ।

“ଠାଭଠାୟୁା ପଡେଲଇଲ—ଠାଭଠାୟୁା ପଡ଼େଲଇଲ ।” ହୁରି ପଡ଼ିଗଲା । ଧାଇଁଲେ କୋଡ଼ଏ ପଚିଶି ଜଣ ତେଲଣେ, ହୋ-ହୋଇ ଲୋକ ଘେରିଗଲେ । ଅଧିକାଂଶ ସେହିଆଡ଼େ ଗଲେ । ଝଗଡ଼ା ଯୋଗୁଁ ହେଲାଣି । ଗେଟଧଳା ହୋଇ ଗୋଲ ତକତକ ଥନ୍ଥଲପେଠା ଦାଢ଼ିବୁଢ଼ା ଭଦ୍ରଲୋକ, ମୁଣ୍ଡରେ ପଗଡ଼ି । ବାସି ଧୋବ ଲୁଗା, ବାସି ଧୋବ ମଠା କାମିଜ୍ ପିନ୍ଧିଛି । ଚେକା ମାଉଁସିଆ ମୁହଁ । ଗ୍ଲୋଠ ଗ୍ଲୋଠ ଆଖି, ନାକ ଅଗରୁ କପାଳ ସେ ମୁଣ୍ଡଯାକେ ସିନ୍ଦୁର କଲା, ମୋଠା ମୋଠା ନାଗ ହଟେ, ହାତରେ ସୁନା ଖଡ଼ୁ । ଗମ୍ଭୀର ହୋଇ ଦମ୍ଭରେ ବସି ରହିଛି । ଟଗଡ଼ିଆକୁ କହିଲା “ଅଡ଼ା ବଲଦ ।”

“ଢାଶଗୋଠା ମାଶ ରଖିଚ୍ କୁଆଡ଼େ ସାଲ୍ ଯାଉଚୁ ସାଉକାଶ ।” ସର୍ଙ୍ଗା ଗୋଇଣ୍ଡ ଗମାଙ୍ଗ ହାଙ୍କିଲା, “ହୁଲା ହୁଲା ।”

“ଦଗେଣ୍ଡି ଦଗେଣ୍ଡି ।” (ଓହ୍ଲାନ୍ତୁ) ତେଲଗୁ କା’ୟୁ ଗୁଷ୍ଟୀ ଡାକୁଛି ।

“ରେତାମୁତେ” (ଓହ୍ଲା) ଦାନ୍ତ ଦେଖେଇ ଖେଂକିଲା ବଣି ଛେଳି ଅର୍ଥାତ୍ କୋଣ୍ଡାଗୋରେ ବଂଶର ଟିମାୟୁା କୋଣ୍ଡାଦୋରା, କାଉରେ ‘ବୁଢ଼ା କନ୍ଧ,’ ଅବୁଅବୁଆ ବାଳୁଆ ଗୁରହାତ ଡେଙ୍ଗା ମଣିଷ, ତାର ଫାଳକାଆ ହାଡ଼ୁଆ ମୁହାଁଠାକୁ କରକୁ ଢ଼ଳେଇ ଦେଇ ପଚାରିଲା “ଇମ୍ଦିଅ ?” ( କୁଆଡ଼େ ? ;

“ଓହ୍ଲେଇ ପଡ଼ ସାହୁକାର ।”

ଠାଭଠାୟୁା ବାରହିଆ ପର ବେକକୁ ତେଡ଼େଇ ଦେଇ ଘୂରିଲା । କହିଲା, “ମୋଠି ମାଣ ଫାଣ କିଛି ନାଇଁ ଯା’ ଯା’ । ଯୁାଙ୍କର କଥାରେ ମୁଁ ଓହ୍ଲେଇବ ?”

"ଓହେଲ୍‌ଇ ପଡ଼୍ ସାହୁକାର ଓହେଲ୍‌ଇ ପଡ଼୍ ।" ଲୋକଙ୍କ ତରଫରୁ ଦାବୀ ବଢ଼ି ଉଠିଲା । "ତେ ଲୋକଙ୍କ କଥାକୁ ଏମେଡ଼ ଦେଇ ତୁ ପଲେଇବୁ ନାଇଁ । ଓହ୍ଲା ।"

"ଅରେ ଯା' ମ, ଖାଲି ଓହ୍ଲା ଓହ୍ଲା । ତମର ଯାହା ମନ ତା କର, ମୋ ଶଗଡ଼ ଆଗରୁ ଉଠ । ଯାଅ କେସ୍ ପକାଅ, କୋର୍ଟ୍ ଘରେ ମୋ ଓକିଲ ତା ଜବାବ୍ ଦବ, ଆମର ଓକିଲ୍ ଅଛନ୍ତି ।"

"କେତେ କୋର୍ଟ କୋର୍ଟ ଫର୍ ଫଟୋଉଚୁ ସାହୁକାର, ଏ ତ ନ୍ୟାୟ ନିଷ୍ପତ୍ତିର କଥା, ଏଠି କୋର୍ଟ କିସ୍ କରବ ? ଭବ ନେ' ହାଟ୍‌ପଦାରେ ଏତେଲୋକ ଏତେ ଗାଁରୁ ରୁଣ୍ଡିଚନ୍ତି, ଯେଇଟା ତୋର କୋର୍ଟ । ଓହେଲ୍‌ଇ ଆ ।"

ସରକାର ଅଧିକାରୀ ଆଉ ଜମାନ୍ ସେ ପାଖରେ ଠିଆ ହୋଇଛନ୍ତି । ସତେ ଅବା ଅପେକ୍ଷା କରିଛନ୍ତି ତାକୁ ହିଁ । ଝାଉଁଝାଉଁ ବ୍ୟାକୁଳ ହୋଇ ଗୁରୁଆଡ଼କୁ ଅନେଇଁଲା । ଖାଲି ମୁଣ୍ଡ, ମୁଣ୍ଡ, ମୁଣ୍ଡ, ମୁଣ୍ଡମାଳ ମାଳ । ଏ ମୁଣ୍ଡ ମାନଂକରେ ଚୋଟାଏ ଲେଖାଁ ଗଣ୍ଡି, ଯୋଡ଼ାଏ ଲେଖାଁ ହାତ, ଦିଟା ଲେଖାଁ ଗୋଡ଼ ଲଗିଛି । ଏ ହାତ ପଥର ଗୁଣ୍ଡା କରେ, ବଡ଼ବଡ଼ ଶାଳଗଛ ବି ଠେଲିପଡ଼େ, ଏ ହାତର ପାହାର ଖାଇ । ମୋଟା ମୋଟା ତମ୍ବା ତାର ପରି ମାଂସର ଦଉଡ଼ା ଗୁରେଇ ହୋଇଛି ଏ ହାତରେ । ମୋଟାମୋଟା ଆଙ୍ଗୁଠିମାନ, ସେଥିରେ ଲୁହା ଗୋବପରି ତମ୍ବା ଗୋବପରି ଗଂଠିମାନ । ଆଉ ଅଙ୍ଗୁଠି ଅଗରେ ବଡ଼ବଡ଼ ନଖମାନ, ଫଟା, ଦାର୍‌ହମଳୀ, ଅସମାନ, କିନ୍ତୁ ଦାଢ଼ୁଆ ନଖ । ତା' ତଳେ କଳାକଳା ମଳି, ଏ ନଖ ଚିରିଦେଇ ପାରେ ଭଣିଭଣା କରି ପାରେ । ଜଂଗଲ ପରି ଅସୁମାରି ଗୋଡ଼ମାନ ଲଗାଲଗି ଠେଲାଠେଲି । ଅସ୍ଥିର

ଅସହାୟ ପାଦ । ଚଳେ ବାଡ଼େଇ ହେଉଛି, କୁନ୍ଦୁଛି । ଏ ପାଦ ଧାନ ମଳାପାରେ । ଏ ପାଦ ପଡ଼ି ଘାସ ନିର୍ମୂଳ ହୁଏ । ମାଟି ଫାଟିଯାଏ ।

"ଓହେଲେଇ ଆ—ଓହେଲେଇ ଅ,—ଦେ ବଡ଼େଇ—ଦେ ଟେଣ୍ଟା ପାପମାଣି ଗୁଡ଼ାକ ।" ତା ଆଡ଼କୁ ହଜାରହଜାର ହାତ ଉଠୁଛି ଆସୁଛି । ଭୂମି ଦୁଲୁକେଇ ମାଡ଼ି ଆସୁଛି ହଜାରହଜାର ଗୋଡ଼ । ଠାଭିଠାକୁରା ସେହି ଅଟଳ ପ୍ରତିଜ୍ଞା ଗମ୍ଭୀର ମୁହଁଗୁଡ଼ାକୁ ଚାହିଁଲା । ସେଠି ଟାଳଟୁଳ କରିବାକୁ ଲେଶମାତ୍ର ମତଲବ ଦିଶୁନାହିଁ । ସେ ଆଖିରେ ଗମ୍ଭୀର ପ୍ରତିଜ୍ଞା, ଭୟ-ନାହିଁ କି ଦୟା ନାହିଁ ।

ଦିଗ୍‌ବଳୟରେ ପାହାଡ଼ର ଶ୍ରେଣୀ ସତେ କି ଅପେକ୍ଷା କରିଛି, ସେ କି ଉତ୍ତର ଦେବ ବୋଲି । ପୁରୁଣା ପାହାଡ଼ । ପୁରୁଣା ଗଛ ଗୋଟା ଗୋଟା । ମେଞ୍ଚିଆ ମେଞ୍ଚିଆ ମୁଗବର୍ଣ୍ଣର ଆକାଶ । ସବୁ ନାଚ ଗୀତ ବନ୍ଦ ହୋଇ ଯାଇଛି । ଶଗଡ଼ ଆଗରେ ମାଳମାଳ ହୋଇ ହାଟର ଜନତା । ସ୍ତ୍ରୀ ପୁରୁଷ ।

ସେମାନେ ଉତ୍ତର ଲୋଡ଼ୁଛନ୍ତି ।

ଆକୁଳ ହୋଇ ଦୂରକୁ ଚାହିଁଲା ଠାଭିଠାକୁରା ସାହୁକାର । କୁଆଡ଼େ ଗଲା ତାର ପୂର୍ବକାଳ ? କୁଆଡେ ଗଲା ସେ କାଳର ସଂସ୍ଥା, ସେ କାଳର ବନ୍ଧୁମାନେ ? ସାହେବ ଥିଲେ, ଅସଲ ଗୋରା ଚମଡ଼ା, ସେମାନେ ଏ ଦେଶ ଛାଡ଼ି ଗଲେଣି । ରାଜୋଡ଼ା ଉଠି ଗଲାଣି । ରାଜା ଜମିଦାରମାନେ, ଏପଟ୍‌କା ମୋଖା ସର୍ଦ୍ଦାରମାନେ—ସେମାନେ ବି ଆଉ ନାହାନ୍ତି, ଚାଲି ଗଲେଣି । ଆଜି ଭେଜି ଖାଇବାକୁ ଭେଟି ନେବାକୁ ଆଉ ତାର ପ୍ରାଧାନ୍ୟ ଅତୁଟ ରଖିବାକୁ ଲୋକ ନାହାନ୍ତି କେହି । ସତେ ତ ! କିଏ ଆଉ ଆଜି ଆସୁଚି ତାକୁ ପଚାରିବାକୁ, ତାକୁ ବରାଦ ଦେବାକୁ—

ଟୋକାରୁ କମଳା ପଠା, ଅଡ଼ାରଙ୍କୁ ଡାଢ଼ା ଡାବା ଗୁଆଁଢେଁ, ଗୁଣପୁର ସପୁର୍ ଧାନର ବାସମତୀ ରାଜଭୋଗ ଚାଉଳ, ପୁଟିଯୂଟି ପଠା ବୋଲି କାଏ କହୁଛ ? ଢାଏ ଡା ଦୁଆରେ ଅଉ ଶବାର ଥୋଉଛି ? ଶବାର କା ଡୋଲି ଅଉ କାହିଁ ? କାଏ ହେଉଛି ତାର ଅଡଥି, କାହାକୁ ସେ ଏମାନଙ୍କ ବିରୁଦ୍ଧରେ ଫେରାଦ ହେବ ? ଅଧିକାରୀ ଜଣେ ଅଛିଛି ସତ, କିନ୍ତୁ ସେ ତ ଜଙ୍ଗପଢ଼ୁଛି ଆଉ ଜାତିଏ ଲୋକ । କହୁଛ ତା ଘରର ଲକ୍ଷ୍ମୀକୁ କାଢ଼ି ଦେବାକୁ; ଏମାନେ ଛେଚି ଜାଳିବେ ବୋଲି । ଓଃ, ଫେର୍ ଅକ୍ତ ଗୁରୁବାଡ଼ାରେ ।

ଗର୍ଜନ ଉଠୁଛି, "ଓହ୍ଲେଇ ପଡ଼ ସାହୁକାର ! ଓହ୍ଲେଇ ପଡ଼ ଆମ ସଙ୍ଗେ ଜଣେ ହ ।" ସେଇ ମୁହିଁଗୁଡ଼ାକ ପାଖକୁପାଖ ଧକାଧକି ଜକାଜକି । ସେଥିରେ ଉପରୋଧ ନାହିଁ, ଝାଲଝୁଲ ନାହିଁ, ଅପେକ୍ଷା ନାହିଁ । ସେଇ ଏତେ ଜାତିର ମୁହିଁ, ଡଂଗ୍ରିଆ, କୋଟିଆ, ଦେଶିଆ କନ୍ଧମାନେ, ପରଜା, ଗଦବା, ସଉରା, ଓଡ଼ିଆ, ତେଲୁଗୁ-ଗୃହୀ, ନୁଖରା ମୁଣ୍ଡିଆ, ମହୁରିଆ, ସବୁ ମୁହିଁର ସେହି ଏକପ୍ରକାର ଭଂଗୀ । ହଠାତ୍ ତାର ଖିଆଲ୍ ହେଲା ଦେଶର ଶାସନ କ୍ଷମତା ଏଇମାନଙ୍କ ହାତକୁ ଚାଲି ଯାଇଛି ! ସମସ୍ତ ବଦଳି ଯାଇଛି । ଆଜି ଯାହା ଅଳି, କାଲିକି ସେ ହେବ ଦାବୀ । ହାଲ ଫିଟି ଆସିଲା । ଲାଗିଲା ସତେ କି ତା'ର ବେଣିସ୍ତ ହାଡ଼ଟା ତରଳି ଯାଉଛି । ଏଇମାନେ ଅକ୍ତ ମାଲିକ ! ଜାଗିଲେଣି ସେମାନେ ? ଏଇ ଯେଉଁମାନଙ୍କୁ ସେ ଭାବଛି ଗୋତି, ଶମ୍ବର, ମହୁରିଆ ବୋଲି, ନଇଲେ ତାର ଜନ୍ମଗତ ହାତତଳିଆ ବୋଲି । ଟିପଚିହ୍ନ ଦେବା ଲୋକ । ମୂର୍ଖ ଲୋକ । ନୁଖୁରା ମୁଣ୍ଡିଆ ହାଲ କାହୁଆ ସରସର ଅପରିଚ୍ଛନ୍ନ ଲୋକ ଭଙ୍ଗା ଚାଳଘରେ ରହୁଥିବା ଅଭାବ ଲୋକ । ପିନ୍ଧିବାକୁ କୌପୁନୀ କି କରିଆ କି ମଇଳା ଚିରା ଖଣ୍ଡେ,

ଖାଇବାକୁ ଅମ୍ବ, ଟାକୁଆ କି ମାଣ୍ଡିଆ ଜାଉ କି ବାସି ପଖାଳ, କେଉଁଦିନ ମିଳିଲେ ଖାଇଲେ, ନଇଲେ ନାହିଁ । ଧଡ଼ାବା ଲୋକ, ସେମାନେବି ଲୋକ, ମାଟିସଂଗେ ଯେ ଲଗିଥାନ୍ତି ପୋକପରି । ବଣରେ ରହନ୍ତି ଅନ୍ତତଃ ମଣିଷ ପରି ନୁହେଁ । ଏଇ ଯେଉଁମାନଙ୍କୁ ସେ ଭାବଥିଲା ନିଜର ଦୌଲତ ବଢ଼େଇବା ଲାଗି କେବଳ ସାଧନ ବୋଲି,—ସେମାନଙ୍କ ହାତକୁ ଶାସନର କ୍ଷମତା ଚାଲିଯାଇଛି । ଆଜି ସେହି ଶହେହଜାରେ ମାଲିକ, ସେ ଜଣେ ନୁହେଁ । ଯୁଗ ବଦଳି ଯାଇଛି ।

ଦୀର୍ଘଶ୍ୱାସ ପକାଇ ସେ ଓହ୍ଲାଇ ପଡ଼ିଲା । ଶୁଣ୍ଡି ଟାଭିଟାସ୍ୱା, ତା ଘରର ପ୍ରାଚୀନ ପଦବୀ ବଙ୍ଗାରପୁ-ବାଣ୍ଡି ଅର୍ଥାତ୍ ସୁନାଶଗଡ଼ । ସହରରେ ତାର ଓକିଲ ଅଛନ୍ତି ସତ, ଦମ୍ଭ ଲୁହାଛଡ଼ର ଜାଲି ଘେରେଇ ଦୁଆର ମୁହଁ ସମେତ ତାର ସେଠି ବଡ଼ କୋଠା ଅଛି । ତାଠି ଟଙ୍କା ବହୁତ, ସୁନା ବହୁତ, ଜମି ବହୁତ । ଶଗଡ଼ଆକୁ ନିର୍ଦ୍ଦେଶ ଦେଲା, ଶଗଡ଼ିଆ ଶଗଡ଼ର ଲଦାର ଭିତରୁ ଗୁରୁଟା ବଡ଼ ବଡ଼ ମାଣ ବାହାର କରି ବଢ଼େଇ ଦେଲା । ତାର ମାଣ ଗୁରୁଟାକୁ ସରକାରୀ ଅଧିକାରୀକୁ ବଢ଼େଇ ଦେଇ ସେ କହିଲା, "ନିଅ ମୋର ମାଣ ।"

"ମୁଁ ଛୁଇଁବ ନାହିଁ, ନିଜର ପାପ ନିଜେ ଭାଙ୍ଗି ନିଆଁରେ ପକାଇ ଦିଅ । ବଙ୍ଗାରପୁ ବାଣ୍ଡି ଟାଭିଟାସ୍ୱା ଶୁଣ୍ଡି ସାହୁକାର, କହ ପାପଗଲା, ହରିବୋଲ ଦିଅ !"

ମୁହଁକୁ ତଳକୁ ପୋତି ମାଣଧରି ସେହିଆଡ଼େ ଚାଲିଛି ସେ ସାହୁକାର । ସେହି ବରଗଛ ଆଡ଼େ, ସେଇଠି ଅନ୍ୟ ସମସ୍ତେ ଜମା ହେଲେଣି । ଜାତି ଜାତିକା ମାଣର ସତେକି ପ୍ରଦର୍ଶନୀ ବସିଛି । ନକଲି ମାଣ, ଠକେଇ ମାଣ, ସେହି ପେଦାପ୍ପି ଆଉ ଚନ୍ଦାପ୍ପି ମାଲମାଲ ।

"ଏଇଥର ମାଣ ଯଜ୍ଞ ଆରମ୍ଭ ହେଉ, ତୁମେ ବଡ଼ ସାହୁକାର, ତୁମେ ଆଗ ।"

ମହାଦେବଙ୍କ ଆଗରେ ନଡ଼ିଆ ଭାଙ୍ଗିଲାପରି ପଥର ଉପରେ ଢୁ ଟା କରି କଚୁଡ଼ି ମାରିଲା, ତା'ର ମାଣମାନଙ୍କୁ ଠାଭିଠାପ୍ସି ସାହୁକାର । ପ୍ରଥମ ପାହାରରେ ହିଁ ହରିବୋଲ ଧ୍ୱନି ହେଲା । ଡମ୍ବ ବାଇଦ ବାଜିଲା, କଞ୍ଚ ମୁରୁଡ଼ି (ବଂଶୀ) ସହେ ସାରଙ୍ଗି ପରକାର ଡୁଙ୍ଗୁ ଡୁଙ୍ଗା ବାଜି ଉଠିଲା । ଡଙ୍ଗ୍ରିଆ କନ୍ଧ ଢେଙ୍ଗ୍ରିଆ ଦକେନିଆ ଲମ୍ବା ପାଡଆକୁ ପାଟିରେ ଯାପି ଧରି ତାକୁ ଥରେଇ ଥରେଇ ସଙ୍ଗୀତ କଲେ, ନାଚ ହେଲା, ଚଇତ ପରବ ମଉଛବରେ ଗାଁ ମଝି ଦାଣ୍ଡପରି ।

ଠାଭିଠାପ୍ସି ମାଣ ଅଲଗ ଫାଟିଲା, ଦାମ୍ଭ କାଠମାଣ, ଧାର ଧାର ହୋଇ ପିତ୍ତଳ ଫିତା ଛୁଆଣି ହୋଇଛି । ସେହି ଦରଫଟା ମାଣ୍ଡିଗୁଡ଼ାକୁ ଗୋଟା ଗୋଟା କରି ଧରି ଛେଚିଲା କୋଣ୍ଡାଗୋରେ ଟିମାପ୍ସି କୋଣ୍ଡା ଦୋରା । ଉଅଁକି ଠେକ ଡେଇଁପଡ଼ି ତାର ସମଗ୍ର ବଳ ଖାଟି କରି ପଥରଉପରେ ବାରମ୍ବାର ପିଟିଲା । ତାର ଆଖି ଶଗଡ଼ ଚକପରି ଘୁରୁଛି । ସେ ଓଠକୁ ବାରମ୍ବାର କାମୁଡ଼ୁଛି । ବାଘ ଯେମିତ ଶୀକାର ଉପରେ ଝାମ୍ପ ପଡ଼େ ସେମିତ ଭୟଙ୍କର ଦିଶୁଛି ତାର ମୂର୍ତ୍ତି । ନୁଖୁରା ଅଲରା ବାଳ ଗୁଡ଼ାକ ମୁଣ୍ଡ ଉପରୁ ବାରମ୍ବାର ଫିଟିପଡ଼ି ତାର ଆଖି ଘୋଡ଼େଇ ପକେଇ ଠଅ ଠଅ ଝାଳ ଟକାଟକ ରୁଢ଼ ସଙ୍ଗେ ମିଶି ଯାଉଛି । ଛେଚୁଛି ବାରମ୍ବାର, ବାରମ୍ବାର । ହିକିଟିକି ହେଲେ ବି ଅଦ୍ଭୁର ଟିକଟିକା କରୁଛି । ଗୁଣ୍ଡା କରୁଛି । ସତେ ଅବା ଖାଲି ମାଣ ନୁହେ, ସେ ଏକ ଜୀଅନ୍ତା ଜନ୍ତୁକୁ ନିଃଶେଷ କରୁଛି ମନଇଚ୍ଛା ପିଟି ପିଟି ଛେଚି ଗୁଣ୍ଡା କରି । ସେହି ଠକେଇ ମାଣକୁ ନିଆଁରେ ପୋପାଡ଼ି ଦେଉଛି ।

ତାର ପିତୃପୁରୁଷ ପାହାଡ଼ ଖୋଲରେ ବଣ କାଟି ଗଛ ମୂଳ ଓପାଡ଼ି ଭୂଇଁ ତାଡ଼ି ଗୃହଜମି କରିଥିଲେ, ଜଣକୁ ବାଘ ବି ଖାଇଥିଲା । କରଜ ଦେଇ ପୁଟିକେ ଅପୁଟି ସୁଧ ପକେଇ, ଏ ବର୍ଷର ସୁଧ ମୂଳକୁ ଆର ବର୍ଷ ପାଇଁ ମୂଳ ବୋଲି ହିସାବ କରି ଏମିତ ହାଁଡ଼ିଆ ଠେକେଇ ମାଣରେ ଦେଢ଼ ପୁଟିକୁ ପୁଟିଏ ବୋଲି ମାପି ନେଇ ସର୍ବସ୍ୱାନ୍ତ କରି ଦେଇ ସାହୁକାର ଗୋବିନ୍ଦ ପାତ୍ରୀ, ରଘୁଆ ପଣ୍ଡା, ଚିଙ୍ଗୁଡ଼ି ସେଠି, ପେଣ୍ଟାପ୍ୟା ଖଣ୍ଡ ଖଣ୍ଡ କରି ସବୁ ଜମି ନେଇ ଗଲେ । ବଣରୁ କନ୍ଦା ଖୋଳା ସାରି ନଇଲେ ବିକିବାକୁ କାଠ ଭାଙ୍ଗିସାରି ସେହି ବାଟେ ଦେଖି ଦେଖି ଯାଏ କୋଣ୍ଡାଗୋରେ ଝିମାସ୍ୟା । ଆଉ କେବେ କେବେ ଭାବେ ଭଲ ଗୋବ ତାର କୋଣ୍ଡାଗୋରେ ଅର୍ଥାତ୍ ବଣର ଛେଳି, ଯେ ଜମି ପରିକୁ ଦେଇଦେଇ ସେ ସତେସତେ ବଣର ଛେଳି ହୋଇ ହିଁ ରହିଲା । ବାଟେ ବାଟେ ଦେଖି ଦେଖି ଯାଏ ତାର ପୂର୍ବପୁରୁଷ କମେଇ ଥିବା କ୍ଷେତମାନ,—ଧାନ ଯେ ସେଥିରେ ମଣିଷ ଲୁଚି ଯିବ—ଆଖୁ ଯେ ସେଥିରେ ହାତୀ ଲୁଚି ଯିବ, କେବେ ଦେଖେ ଗହମ ଠିଆ ହୋଇଛି । କି ଗହମ ଫଳେ ସେଠି ! ହଜାର ହଜାର କଦଳୀଗଛ ଦେଖେ ସେଠି ସେ, କାନ୍ଦିମାନ ଝୁଲୁଥାଏ, ପତ୍ର ହଲୁଥାଏ ହାତୀକାନ ପରି ।

କୋଣ୍ଡାଗୋରେ ଝିମାସ୍ୟା ତାଙ୍କ ପନ୍ଦ ମୁଣ୍ଡେଇ ସେହି ବାଟେ ଯାଏ ।

. .

ସେମିତି ଅଉ କେତେ ମଣିଷ ସେଠି ଲୁଣ୍ଡିହୋଇ ମାଣ ଭାଙ୍ଗିଲେଣି । ସମଗ୍ର ଶକ୍ତି ଖର୍ଚ୍ଚ କରି ଦୁଲ୍ ଦାଲ୍ ପାହାର ସତେ ଅବା 'ଦୁବ୍ରେ' ପୂଜାର ପୋଡ଼ ଉପରେ ପଡ଼ୁଛି ଦୁଲ୍ ଦାଲ୍ ଠାଙ୍ଗିଆ ପାହାର ।

ଗୁରୁଅଙ୍କ ହରିବୋଲ୍ ଆଉ ହର୍ଷ ସଙ୍ଗୀତ ଶୁଭୁଥିଲା । ସୁନାଖଗଡ଼ ଠାଭ୍‌ଠାୟୀ ଅଧିକାରୀ ଆଗରେ ଅଣ୍ଠା ସଳଖି, ବେକକୁ ତଳକୁ ନୁଆଁଇ ଦାଣ୍ଡବତ ହୋଇ କହିଲେ "ଶେଲଃ ( ଅର୍ଥାତ୍ ଚିରାୟୁ ) ମହାପ୍ରଭୁ ।"

ଅଧିକାରୀ କହିଲେ—"ହଉ ଯା ।"

ନିଆଁ ଅଦ୍ଭୁତ ତେଜ ହୋଇ ଜଳୁଥିଲା ।



[ 'ଡଗର' ୨୦ଶ ବର୍ଷ, ୫ମ ସଂଖ୍ୟା, ନଭେମ୍ବର ୧୯୫୬ ]

ଉଦୟନାଥ ଷଡ଼ଙ୍ଗୀ

# ତିନି ପୁରୁଷ

---

ପ୍ରସିଦ୍ଧ ଜୟଗୋପାଳ କାରଖାନାର ପ୍ରତିଷ୍ଠାତା ଓ ମାଲିକ ଅଶୀ ବର୍ଷ ବୟସର ବୃଦ୍ଧ ସେଠ ବଦ୍ରୀଦାସ ଅଳସ ଭାବରେ ବିଛଣାରେ ପଡ଼ିଛନ୍ତି । ସେ ନିର୍ଧାର୍ଯ୍ୟ ଜାଣିସାରିଲେଣି ଯେ, ତାଙ୍କର ଇହଲୋକର ଜମାଖରଚ ହିସାବ ନିକାଶ ହୋଇ ଆସିଲାଣି । ଯେ କୌଣସି ମୂହୂର୍ତ୍ତରେ ପରଲୋକରୁ ଡାକରା ଆସିଯିବ । ସେଥିପାଇଁ ସେ ଦେହ ଚିତ୍ତ ମନକୁ ପ୍ରସ୍ତୁତ କରୁଛନ୍ତି ।

ଜନ୍ମଠାରୁ ଦଶବର୍ଷ ଯାଏ ତାଙ୍କ ଜୀବନରେ କଅଣ ଘଟିଥିଲା, ତାହା ଆଜି ତାଙ୍କର ସ୍ମରଣରେ ନାହିଁ । ମାତ୍ର ଦଶବର୍ଷ ବୟସରୁ ଏ ସତୁରି ବର୍ଷର ଚିତ୍ର ଆଜି ଗୋଟିଗୋଟି ହୋଇ ତାଙ୍କ ମାନସପଟରେ ଅଙ୍କିତ ହୋଇଯାଉଛି ।

ସେ ନିଜର ଜନ୍ମଭୂମିର ମାୟାମମତା ଛାଡ଼ି କେବଳ ଲୋଟାକମଳ ଧରି ଦାଦୋ ଜାତଭାଇଙ୍କ ସଙ୍ଗରେ ଏ ସହରକୁ ଆସିଥିଲେ । ସେମାନଙ୍କ ଭିତରୁ କିଏ କୁଆଡ଼େ ଗଲେଣି । ଏ ପର୍ଯ୍ୟନ୍ତ ରହିଛନ୍ତି କେବଳ ସେହି ବଦ୍ରିୟା । ବର୍ତ୍ତମାନ ସେ ଆଉ ବଦ୍ରିୟା ନୁହେଁ, ସେଠ ବଦ୍ରୀ ଦାସ,—କୋଟିପତି, ପ୍ରସିଦ୍ଧ କାରଖାନାର ମାଲିକ । ସେ ପ୍ରଥମେ ଗୁଟିଏ ଗୋଟିଏ ଜଣେ ମହାଜନ ପାଖରେ ଗୁହାରି କରୁଥିଲେ; ବର୍ତ୍ତମାନ ତାଙ୍କ ଅଧୀନରେ ଅନ୍ତତଃ ଗୁଡ଼ିଏ ହଜାର ଲୋକ ଖାଉଛନ୍ତି । ଜଣେ ଲୋକର ଜୀବନକାଳ ମଧ୍ୟରେ ଏତେ ବଡ଼ ପରିବର୍ତ୍ତନ କେତେ ଜଣଙ୍କ ଭାଗ୍ୟରେ ଘଟେ ? ଯେତେ ଜଣଙ୍କ ଭାଗ୍ୟରେ ଘଟିଥାଏ, ତାଙ୍କୁ ଅବଶ୍ୟ ଭାଗ୍ୟବାନ୍ କୁହାଯାଏ । ମାତ୍ର ବଦ୍ରୀ ଦାସ କଅଣ ଭାଗ୍ୟବାନ୍ ? ଏ କାରଖାନା କଅଣ ତାଙ୍କ ଗର୍ବ ଓ ଗୌରବର ପ୍ରତୀକ ?

ଏହି କଥା ଭାବୁଭାବୁ ତାଙ୍କ ମୁଣ୍ଡ ପୁଣି ଘୂରିଗଲା । ବଡ଼ ବଡ଼ ଝରକା ଥିବା ଘର ଭିତରେ ଠା ଦିନ ଦ୍ୱିପ୍ରହର ସମୟରେ ବି ତାଙ୍କ ଆଖିକୁ ଅନ୍ଧାର ଦେଖାଗଲା ।

ବଦ୍ରୀ ଦାସ ତାଙ୍କ ଜୀବନରେ ଆଳସ୍ୟ କଅଣ ଜାଣନ୍ତି ନାହିଁ । ଭୋଗବିଳାସ ତାଙ୍କୁ କେବେହେଲେ ସ୍ପର୍ଶ କରିପାରି ନାହିଁ । ତାଙ୍କର ପ୍ରତି ମୁହୂର୍ତ୍ତର ସାଥୀ କାର୍ଯ୍ୟ । କାମ ବ୍ୟତୀତ ସଂସାରରେ ଯେ ଆଉ କିଛି ଅଛି, ସେ ତାହା ଜାଣନ୍ତି ନାହିଁ ।

ଗୁହାରି ଛାଡ଼ି ସେ ବ୍ୟବସାୟ ଆରମ୍ଭ କଲେ । ବେଶ୍ ଦୁଇ ପଇସା ହାତକୁ ଆସିଲା । ସହରରେ ଘରବାଡ଼ି ମୁଣ୍ଡ ଟେକିଲା । ତାଙ୍କର ପ୍ରତିଷ୍ଠା ବଢ଼ିଲା ।

ତାଙ୍କୁ ଯେତେବେଳେ ପଚିଶ ବର୍ଷ ବୟସ, ସେତେବେଳେ ସେ ଲକ୍ଷପତି । ଜୟଗୋପାଳ କାରଖାନା ପ୍ରତିଷ୍ଠା ସେତିକି-

ବେଳେ । ପ୍ରଥମେ କୋଡ଼ିଏ ଜଣ ଶ୍ରମିକ ଏଥିରେ କାମ କରୁଥିଲେ । ଯାହା ଜିନଷ ତିଆର ହେଉଥିଲା, ସେଥିରୁ ଏହି ସହରର ଗୃହଦା ବି ମେଣ୍ଟାଇ ହେଉ ନ ଥିଲା । କାରଖାନା ବଢ଼ାଇବାକୁ ତାଙ୍କର ପ୍ରବଳ ଆକାଂକ୍ଷା । ମାତ୍ର ନିଜ କାର୍ଯ୍ୟକାଳ ଭିତରେ ସେ ତାହା କରିପାରିଲେ ନାହିଁ ।

କାରଖାନାଟି ଯେତେ ସ୍ୱରୁଖୁରୁରେ ଚଳିବ ବୋଲି ସେ କଳ୍ପନା କରିଥିଲେ, ତାହା ହେଲା ନାହିଁ । ସବୁ ସମୟରେ ଲୋକ ଅଭାବ; ମନ ମୁତାବକ ଜିନଷ ତିଆର ହୋଇପାରୁ ନାହିଁ । ଯେ ବର୍ଷେ ଦୁଇବର୍ଷ ରହି କାମ ଶିଖିଗଲା, କାମରେ ଅଭ୍ୟସ୍ତ ହେଲା, କିଛି ଦିନ ପରେ କାରଖାନା ଛାଡ଼ି ସେ ପଳାଇଗଲେ । ଯାହାଦ୍ୱାରା ବେଶି କିଛି ମାଲ ତିଆରି ହୋଇପାରିବ ବୋଲି ଆଶା କରାଯାଉଥିଲା, ସେ ଆଶାକୁ ଭାଙ୍ଗି ସେ ଚୂରମାର କରିଦେଲା । ସମୟ ସମୟରେ ବଦ୍ରୀ ଦାସ ବଡ଼ ବିଚଳିତ ହୋଇଉଠନ୍ତି । ସେ ଭାବନ୍ତି, ଛୋଟ ଦୋକାନଟି କରି ମୁଁ ବେଶ୍ ଶାନ୍ତିରେ ଥିଲି । କାରଖାନା ଖୋଲିବା ଅର୍ଥ ଲୋକଙ୍କୁ ପୋଷିବା, ସେମାନଙ୍କ ମର୍ଜି ଜଗି ଚଳିବା ।

ତାଙ୍କ ଜୀବନରେ ସବୁଠାରୁ ବଡ ଧକ୍କା ଲାଗିଲା, ଯେତେ-ବେଳେ ତାଙ୍କର ଏକମାତ୍ର ପୁଅ ତାଙ୍କର ପ୍ରତିଷ୍ଠିତ କାରଖାନାର ଶ୍ରମିକମାନଙ୍କ ହାତରେ ନିହତ ହେଲେ । ସେଠ ବଦ୍ରୀ ଦାସ ଜୀବନରେ କେବେ ଦବିଯାଇ ନାହାନ୍ତି । ମାତ୍ର ଏହି ଘଟଣା ଏକାବେଳକେ ତାଙ୍କ ମେରୁଦଣ୍ଡ ଭାଙ୍ଗିଦେଲା । ସେ କାରଖାନାକୁ ବନ୍ଦ କରିଦେବାକୁ ସ୍ଥିର କଲେ ।

ମାତ୍ର ଏ ଦୁନିଆରେ ଏପରି କେତେକ ଅଛି, ଯାହା ସୃଷ୍ଟି କରିବା ସହଜ; ମାତ୍ର ଭାଙ୍ଗିଦେବା ଅତି କଷ୍ଟ, ହୁଏ ତ ଅସମ୍ଭବ । ବଦ୍ରୀ ଦାସ କାରଖାନା ବନ୍ଧନରୁ ମୁକୁଳିବାକୁ ଯେତେ ଇଚ୍ଛା କଲେ

ବି ମୁକୁଳି ପାରିଲେ ନାହିଁ । କାରଖାନା ଭାଙ୍ଗିଲା ନାହିଁ, ତାଙ୍କ ମନ ଭାଙ୍ଗିପଡ଼ିଲା, ତା ସଙ୍ଗେ ସଙ୍ଗେ ଦେହ ମଧ୍ୟ । ସେହି ଲୁହାପରି ଟାଣ ଶରୀରକୁ ବୟସର ଧକ୍କା ଯାହା କରିପାରି ନ ଥିଲା, ମନର ଅଶାନ୍ତି ତାହା କଲା । ସେଠ ସବୁ ଦିନ ପାଇଁ ବିଛଣା ଧରିଲେ ।

ସେତେବେଳେ ତାଙ୍କ ଅନିଚ୍ଛା ସତ୍ତ୍ୱେ ଏ ସବୁ ଜଞ୍ଜାଳ ମୁଣ୍ଡ ପାତି ଗ୍ରହଣ କରିନେଲେ ତାଙ୍କ ନାତୁଣୀ କୌଶଲ୍ୟା—ତାଙ୍କ ମୃତ ପୁତ୍ରର କନ୍ୟା । ସେଠଙ୍କ ଆଖିରେ ସେ ସାମାନ୍ୟ ଝିଅ ପିଲାଟିଏ । ମାତ୍ର ସେ ଯାହା କରିପାରିଲେ, ନିଜେ ସେଠ ବି ତାଙ୍କ ଜୀବନରେ ତାହା କରିପାରି ନାହାନ୍ତି କି କରିପାରି ନ ଥାନ୍ତେ ।

କୌଶଲ୍ୟା କାରଖାନାର ପରିଚାଳନା ଭାର ନିଜ ହାତକୁ ନେଲେ, ଏଇ ଦଶବର୍ଷ ହେଲା । ଏହି ସମୟ ମଧ୍ୟରେ କାରଖାନାର ଖ୍ୟାତି ଦେଶସାରା ବ୍ୟାପିଗଲାଣି । ଯେତେ ମାଲ୍ ପ୍ରତିଦିନ ଉତ୍ପାଦନ କରାଯାଉଛି, ତାହା ଏ ଦେଶ ଛାଡ଼ି ବହୁ ପରିମାଣରେ ଅନ୍ୟ ଦେଶକୁ ରପ୍ତାନୀ ହେଉଛି । ବିଦେଶରୁ ପ୍ରତି ଦିନ ବହୁ ପରିମାଣରେ ମାଲ୍ ପାଇଁ ବରାଦ ଆସୁଛି । ଦିନକୁ ଦିନ ଚାହିଦା ବଢ଼ୁଛି । ତାଙ୍କ ଅମଳରେ ଏକାଠି କୋଡ଼ିଏ ପଚାଶ ଜଣ ଲୋକ ବି କାମ କରିବା ଅସମ୍ଭବ ହୋଇ ଉଠୁଥିଲା । ମାତ୍ର ବର୍ତ୍ତମାନ ପ୍ରତିଦିନ ହଜାର ହଜାର ଶ୍ରମିକ ଖଟୁଛନ୍ତି । କାରଖାନାର ଘର ବଢ଼ି ଚାଲିଛି । ନୂଆ ନୂଆ କିସମର କଳ ଆସି ବସୁଛି । ସତେ ଯେପରି କେଳାର କୁହୁକରେ କାଉଁରୀ ହାଡ଼ ପରଶ ପରି ଆଖି ପିଛୁଳାକେ ଏସବୁ ଘଟି ଯାଉଛି ।

ସେଠ ଗତ ଦଶବର୍ଷ ହେଲା କାରଖାନା ସଂକ୍ରାନ୍ତରେ ଏକାବେଳକେ ନିସ୍ପୃହ ଥିଲେ । କିଛି ବୁଝିବାକୁ, କିଛି ଜାଣିବାକୁ ଇଚ୍ଛା ହେଉ ନ ଥିଲା । ମାତ୍ର ଆଜି କେଜାଣି କାହିଁକି, କାରଖାନା

ସଂକ୍ରାନ୍ତରେ ସବୁ କଥା ଗୋଟିଗୋଟି ଜାଣିବା ପାଇଁ ତାଙ୍କର ଆଗ୍ରହ ହେଲା । ସେ ମ୍ୟାନେଜରଙ୍କ ପାଖକୁ ଖବର ପଠାଇ ଗାଡ଼ି ଅଣାଇଲେ । ଦୁଇ ଜଣ ଚାକରଙ୍କ କାନ୍ଧରେ ଭର ଦେଇ ଗାଡ଼ିରେ ଉଠିଲେ । କାରଖାନାକୁ ଗଲେ ।

କୌଶଲ୍ୟା ନିଜ ଅଫିସ ଘରେ ହିସାବ ଦେଖିବାରେ ତନ୍ମୟ ଥିଲେ । ଖବର ପାଇ ପଦାକୁ ଦଉଡ଼ିଆସିଲେ । ମ୍ୟାନେଜର ସମେତ ଅଫିସର ସମସ୍ତ ବଡ଼ କର୍ମଚାରୀ ଧାଇଁଆସିଲେ । କାରଖାନାର ଅସଂଖ୍ୟ ଶ୍ରମିକ ବି ସେଠାରେ ରୁଣ୍ଡ ହୋଇଗଲେ । ସମସ୍ତେ ଭକ୍ତିର ସହିତ ପ୍ରଣାମ କଲେ । କେହି ନିଜକୁ କୃତକୃତ୍ୟ ମଣେକରି ଠିଆ ହୋଇ ରହିଲେ, କେହି ନିଜ କାମରେ ଲାଗିଗଲେ ।

ଏଇମାନଙ୍କୁ ସେଠ ଅନ୍ତରରେ ବଡ଼ ଘୃଣା କରନ୍ତି । ବିଶେଷତଃ ପୁଅ ମଲା ଦିନରୁ ତାଙ୍କ ମନ ଅତି ବେଶୀ ବିଷେଇ ଉଠିଛି । ସେମାନଙ୍କ ପ୍ରତି ତାଚ୍ଛଲ୍ୟ ଭାବ ଦେଖାଇ ସେ କୌଶଲ୍ୟା ସହିତ ଅଫିସ ଘରକୁ ଚାଲିଲେ ।

କୌଶଲ୍ୟାଙ୍କ ଇଙ୍ଗିତରେ ମ୍ୟାନେଜର ପ୍ରଭୃତି ଯେଉଁମାନେ ସେଠାରେ ଥିଲେ, ସେମାନେ ନିଜନିଜର କାର୍ଯ୍ୟକ୍ଷେତ୍ରକୁ ଚାଲିଗଲେ । କୋଠରୀରେ ବର୍ତ୍ତମାନ କେବଳ ଯୁବତୀ କୌଶଲ୍ୟା ଓ ବୃଦ୍ଧ ସେଠ ।

କିଛି ସମୟ ନୀରବରେ କଟିଗଲା ପରେ ବୃଦ୍ଧଙ୍କ ଶୁଷ୍କ କଣ୍ଠରୁ କଥା ବାହାରିଲା । ସେ କହିଲେ, "ମା, ମତେ ଜଳଜଳ ଦେଖାଯାଉଛି, ତୋ ବାପ ପରି ତୁ ମଧ୍ୟ ଦିନେ ଏଇ ନୃଶଂସ ଶ୍ରମିକଙ୍କ ହାତରେ ଜୀବନ ଦେବୁ । ତୋ ବାପ ସମୟରେ କେତେ ଶହ ମାତ୍ର ଲୋକ କାମ କରୁଥିଲେ; ବର୍ତ୍ତମାନ ଯେ ହଜାର ହଜାର ଲୋକ ରଖିଛୁ । ଏମାନଙ୍କୁ ବିଶ୍ୱାସ କରିବା ନିରାପଦ ନୁହେଁ ।"

କୌଶଲ୍ୟା ଈଷତ୍ ହସି କହିଲେ, "ବାବୁଜୀ, ଆଜି ତ ତୁମକୁ ଦେଖିବା ଲାଗି କେତେକ ଶ୍ରମିକ ଜମା ହୋଇଥିଲେ । ସେମାନଙ୍କ ଭାବ-ଭଙ୍ଗୀରୁ ସେପରି କିଛି ସୂଚନା ପାଇଲ କି ? "

"ନାହିଁ ମା, ଏତେ ଅଳ୍ପ ସମୟ ମଧ୍ୟରେ ସେମାନଙ୍କୁ ଚିହ୍ନିବା ସହଜ ନୁହେଁ, ସମ୍ଭବ ବି ନୁହେଁ ।"

କୌଶଲ୍ୟା କହିଲେ, "ତୁମେ ସିନା ସେମାନଙ୍କୁ ଚିହ୍ନି ପାରିଲ ନାହିଁ; ମୁଁ କିନ୍ତୁ ଚିହ୍ନି ସାରିଛି । ବଣର ବାଘ ଭାଲୁ କୌଣସି ବିପଦର ଆଶଙ୍କା ନ କରିବା ଯାଏ ମନୁଷ୍ୟ ଉପରେ ଆକ୍ରମଣ କରନ୍ତି ନାହିଁ । ସେ ମନୁଷ୍ୟକୁ ଭୟ କରନ୍ତି; ତେଣୁ ମନୁଷ୍ୟ ତାଙ୍କୁ ଡରେ । ସେହିପରି ଶ୍ରମିକ ଯେତେବେଳେ ମାଲିକଙ୍କୁ ହିଂସ୍ର ବୋଲି ଧାରଣା କରିନେବ, ସେତେବେଳେ ଯାଇ ସେ ତାକୁ ହିଂସା କରିବ । ସେତିକି ଆଶଙ୍କା ନ ହେବା ଯାଏ, ଶ୍ରମିକ ଯେପରି, ମାଲିକ ବି ସେହିପରି ସରଳ ସୁନ୍ଦର ସ୍ୱଭାବର ମନୁଷ୍ୟ ।"

ସେଠ ଅବଶ୍ୟ ଏ ସବୁ କଥା ଯେ ବୁଝିପାରିଲେ, ତା ଜଣାପଡ଼ିଲା ନାହିଁ । ତଥାପି ସେ କହିଲେ, "ମୁଁ କାରଖାନା ଚଳାଇଲି ଦଶବର୍ଷ; ତା ପରେ ଦେବା ବାପ ବୁଝିଲା ଦଶବର୍ଷ । ମୁଁ ସେତେବେଳେ ସିଧା ସଳଖ କାରଖାନାକୁ ନ ଆସୁଥିଲେ ମଧ୍ୟ ମୋର ଇଙ୍ଗିତରେ କାରଖାନା ଚାଲୁଥିଲା । ମୁଁ ସବୁ ନୀତି ଚିପି ପରାମର୍ଶ ଦେଉଥିଲି । ମୋର ଏ କୋଡ଼ିଏ ବର୍ଷର ଅଭିଜ୍ଞତାରେ ମୁଁ ଏମାନଙ୍କୁ ଭଲ ରୂପେ ଚିହ୍ନିପାରିଛି । ଏମାନଙ୍କୁ ଆଦୌ ବିଶ୍ୱାସ ନାହିଁ ।"

କୌଶଲ୍ୟା କହିଲେ, "ତୁମେ ନିଶ୍ଚୟ ତ କହିବ, ସେ କୋଡ଼ିଏ ବର୍ଷ ଅପେକ୍ଷା ଏବେ କାରଖାନାର ପ୍ରତିଷ୍ଠା ବଢ଼ିଛି । ପ୍ରତିଦିନ ଲକ୍ଷଲକ୍ଷ ଟଙ୍କାର ମାଲ ତିଆରି ହେଉଛି, କାରବାର ବି

ବହୁ ଦୂରକୁ ବ୍ୟାପିଯାଇଛନ୍ତି । ଶ୍ରମିକମାନଙ୍କ ମନ ନ ଥିଲେ, ସେମାନଙ୍କର ସହଯୋଗ ମିଳୁ ନ ଥିଲେ ଏହା ହୁଅନ୍ତା କି ?”

“ହଁ, ତା ହେଉଛି ସତ; ତଥାପି ଶ୍ରମିକ ହିଁ ଶ୍ରମିକ— ।”

ବୃଦ୍ଧଙ୍କ କଥା ଶେଷ ନ ହେଉଣୁ କୌଶଲ୍ୟା ବାଧା ଦେଲେ, “ବାପୁଜୀ, ପ୍ରଥମ କୋଡ଼ିଏ ବର୍ଷର ଅଭିଜ୍ଞତା ତୁମର ଯେତିକି ହୋଇଛି, ମୋର ତା ଅପେକ୍ଷା କମ୍ ହୋଇ ନାହିଁ । ପ୍ରଥମ ଦଶବର୍ଷ କଥା ନିଆଯାଉ । ସେତେବେଳେ ତୁମର ଦୃଢ଼ ଧାରଣା ଥିଲା, ଭାତ ଥିଲେ ବହୁତ ହାତୁଆ ମିଳିବେ । ତୁମେ ଟଙ୍କା ଖଟାଉଥିଲ । ତେଣୁ ତୁମେ ଭାବୁଥିଲ, ଟଙ୍କା ଯୋଗେ ସବୁ କିଛି ହୋଇପାରିବ । ଟଙ୍କା ବଳରେ ତୁମେ କାହାରିକୁ ଖାତିର କରୁ ନ ଥିଲ । ଶ୍ରମିକମାନେ କେବଳ ସାମାନ୍ୟ କେତୁଟା ଟଙ୍କା ପାଇଁ ମୁଣ୍ଡ ଟେକି ଥିଲେ, ତତ୍ପର ରହୁଥିଲେ । ସେମାନଙ୍କର ତୁମପ୍ରତି କି ତୁମର କାରଖାନା ପ୍ରତି ମାତୃମମତା ନ ଥିଲା । ସେମାନେ ବୁଝୁଥିଲେ, ତାଙ୍କର ମୂଲ ଅନୁପାତରେ ପରିଶ୍ରମ କରିବେ; ତା ନ ହେଲେ କାରଖାନା ଛାଡ଼ି ପଳାଇବେ । ସେତେବେଳେ ମାଲିକ ଶ୍ରମିକ ମଧ୍ୟରେ ଏଇ ଟଣାଓଟରା ଲାଗି ରହିଥିଲା ।

“ତା ପରେ ମୋର ସ୍ୱର୍ଗୀୟ ପିତା ପରିଚାଳନା ଦାୟିତ୍ୱ ନେଲେ । ତୁମ ଅମଳର ବିଭେଦ ସେତେବେଳକୁ ବେଶି ବଢ଼ି ଯାଇଥିଲା । ସେତେବେଳକୁ ଶ୍ରମିକମାନଙ୍କ ମନରେ ଧାରଣା କରାଇ ଦିଆଗଲା, ହାତ ଥିଲେ ଭାତ ନିଶ୍ଚୟ ମିଳିବ । ଆମର ହାତ ଅଛି, ଆମେ ଖଟୁଛୁ; ତେଣୁ ଆମେ ହିଁ ସର୍ବେସର୍ବା । କେତେକ ରାଜନୀତିକ ଦଳର କୁଅଭିସନ୍ଧି ମୂଳକ ପ୍ରଚାର ସେମାନଙ୍କୁ ଉତ୍ତେଜିତ କରିଦେଲା । ସେମାନଙ୍କ ମୁଣ୍ଡରେ ଭୁକାଇ ଦିଆଗଲା ଯେ, ଶ୍ରମିକ ମାଲିକ ସଂପର୍କ ହେଉଛି ଖାଦ୍ୟ ଖାଦକ ସଂପର୍କ ।

ଟଙ୍କା କିଛି ନୁହେ, ବୁଦ୍ଧି କିଛି ନୁହେ; ଶ୍ରମିକଙ୍କ ଶ୍ରମହିଁ କାରଖାନା ଉନ୍ନତିର ଏକମାତ୍ର କାରଣ। ଏହି ବର୍ଗ୍ଗର-ବିଭ୍ରାନ୍ତିରେ ବଢ଼ି ଉଠୁଥିବା ଅନୁଷ୍ଠାନ ଭାଙ୍ଗିଯିବାକୁ ବସିଲା। ଶ୍ରମିକଙ୍କ ହାତରେ ଯିମା ପ୍ରାଣ ଦେଲେ।

"ଆଗର ତୁଳ ଦଶନ୍ଧରେ ଯେଉଁ ବର୍ଗ୍ଗର-ବଭେଦ ଥିଲା, ମୁଁ ତାହା ଦୂର କରିଦେଇ ପାରିଛି। ମୋ ଆଖିରେ ଅନୁଷ୍ଠାନର ଉନ୍ନତି ପାଇଁ ଟଙ୍କାର ଅବଶ୍ୟକତା ଯେତିକି, ଶ୍ରମର ଆବଶ୍ୟକତା ତା ଠାରୁ କମ୍ ନୁହେ। ତା ସାଙ୍ଗକୁ ମ୍ୟାନେଜର ପ୍ରଭୃତି ପରିଚାଳନା କର୍ମଚାରୀଙ୍କ ବୈଦ୍ୟାବୁଦ୍ଧିର ସାହାଯ୍ୟ ବି ନିତାନ୍ତ ଦରକାର। ଏ ତିନୋଟି ନ ମିଳିଲେ କୌଣସି ଅନୁଷ୍ଠାନ ଉନ୍ନତି କରିବା ଦୂରରେ ଥାଉ, ତିଷ୍ଠି ରହିପାରିବ ନାହିଁ। ତୁମର ଟଙ୍କା, ଅଫିସ ପରିଚାଳକଙ୍କ ବୁଦ୍ଧି ଓ ଶ୍ରମିକଙ୍କ ଶ୍ରମକୁ ମୁଁ ଗୋଟିଏ ଧାଗରେ ଚଳାଇପାରିଛି। ତେଣୁ କାରଖାନାର ଉନ୍ନତି ହୋଇଛି, କାରବାର ବଢ଼ିଛି।"

ଏତେଗୁଡ଼ାଏ କଥା ଶୁଣିବାକୁ ବୃଦ୍ଧ ନିଜକୁ ପ୍ରସ୍ତୁତ କରି ପାରୁ ନ ଥିଲେ। ସେ ମୁହଁରେ ବିରକ୍ତିର ଭାବ ଫୁଟାଇ ଚୌକିରୁ ଉଠି ପଡ଼ୁଥିଲେ। କୌଶଲ୍ୟା ତାଙ୍କ ହାତ ଧରି ଧୀରେ ଚୌକିରେ ବସାଇଦେଲେ। କହିଲେ, "ତୁମେ ଟିକିଏ ମନ ଦେଇ ଶୁଣ। ତୁମେ ଭାବୁଥିଲ, କାରଖାନା ତୁମର। ମୁଁ ଭାବୁଛି, ଆମେ ଏଠାରେ ଯେତେ କାମ କରୁଛୁ, କାରଖାନା ଆମ ସମସ୍ତଙ୍କର। ତୁମ ସମୟରେ କାରଖାନାର ଘର ଥିଲା ଅତି ଅଳ୍ପ, ବ୍ୟାଙ୍କରେ ଟଙ୍କା ଜମା ରହୁଥିଲା ବେଶି। ତୁମେ ଭାବୁଥିଲ, ଯେ କୌଣସି ମୁହୂର୍ତ୍ତରେ କାରଖାନା ବନ୍ଦ କରିଦେଲେ ଟଙ୍କାର ମାଲିକ ହେବ ତୁମେ। ମାତ୍ର କାରଖାନା ଯେ କେବେ ବନ୍ଦ କରି ଦିଆଯିବ, ଏ କଳ୍ପନା ମୋ

ମନକୁ ଆଦୌ ଛୁଇଁ ନାହିଁ । ତେଣୁ ବର୍ତ୍ତମାନ ବ୍ୟାଙ୍କରେ ଟଙ୍କା ରହିଛି ଅଳ୍ପ, କାରଖାନାରେ ଖଟିଛି ବହୁତ ବେଶି । ସେ ସମସ୍ତ ମିଶାଇଲେ ତୁମ ଅମଳର ମହାସ୍ୱଦ ଅପେକ୍ଷା ନିଶ୍ଚୟ ଶହେ ଗୁଣ ବେଶି ହେବ । ସେ ସବୁ ତ କେବଳ ଏଇ କାରଖାନାରୁ ମିଳିଛି । କାରଖାନା କହିଲେ, ଏହି ଶ୍ରମିକଙ୍କ ଶ୍ରମରୁ । ସେଇଥିପାଇଁ ମୁଁ ସେମାନଙ୍କ ରହିବା ଘର, ସେମାନଙ୍କ ପାଇଁ ଡାକ୍ତରଖାନା, ସ୍କୁଲ, ଦେବତା ମନ୍ଦିର ଆଦି ତିଆରି କରାଇଛି । ତାହା କିଛି ସେମାନେ ସଙ୍ଗରେ ନେଇଯିବେ ନାହିଁ; ତାହା ଏହି କାରଖାନାର; କାରଖାନା ପ୍ରତିଷ୍ଠାତାଙ୍କର ଯୁଗଯୁଗ ଧରି ଗୁଣ କୀର୍ତ୍ତନ କରୁଥିବ ।”

ବୃଦ୍ଧ କ୍ରୋଧ ଓ ବିରକ୍ତି ମିଶା ସ୍ୱରରେ କହିଲେ, “ତୁ ଭାବୁଛୁ, ତୁ ମୋ ଠାରୁ, ତୋ ବାପ ଠାରୁ ବେଶି ଗୁଣିଲକ୍ ।”

କୌଶଲ୍ୟା ପୂର୍ବ ପରି ହସହସ ମୁହଁରେ ଉତ୍ତର ଦେଲା, “ନା ବାବୁଜୀ, ମୁଁ ତା ଭାବୁ ନାହିଁ । ତୁମର ରକ୍ତ, ତୁମର ବୁଦ୍ଧିରେ ତ ମୋର ଏ ଦେହ ମନ ଗଢ଼ା । କେବଳ ପ୍ରଭେଦ ଏତିକି, ମୋ ବାପ ବୁଢ଼ାବାପାଙ୍କ ବୁଦ୍ଧି ସହିତ ମୁଁ ସେମାନଙ୍କ ଠାରୁ ଯେ ଶିକ୍ଷା ପାଇଛି, ତୁମେ ତୁମ ବାପ ବୁଢ଼ାବାପାଙ୍କ ଠାରୁ ତାହା ପାଇ ନ ଥିଲ । ସେହି ଶିକ୍ଷାଟିକ ମୋର ସମ୍ବଳ ।”

ବୃଦ୍ଧ ତାଙ୍କ ଜୀବନରେ କଥା କହିଛନ୍ତି ଅଳ୍ପ, ଶୁଣିବାକୁ ଶୁଣିଛନ୍ତି ବି ତହୁଁ କମ୍ । ଏତେଗୁଡ଼ାଏ ବକ୍ତୃତା ତାଙ୍କୁ ଅସହ୍ୟ ବୋଧ ହେଲା । ସେ ଥରଥର ହୋଇ ଥରି ଚୌକିରୁ ଉଠି ପଡ଼ିଲେ । କୌଶଲ୍ୟା ତାଙ୍କୁ ଯତ୍ନର ସହିତ ଧରି ନେଇ ଗାଡ଼ିରେ ବସାଇଦେଲେ ଓ ଘରକୁ ପଠାଇଦେଲେ ।

ପର ଦିନ ସକାଳେ ସେଠ ବଦ୍ରୀ ଦାସଙ୍କ ନଅର ଭଳି ଘର ଭିତରୁ କାନ୍ଧ ବୋବାଳି ଶୁଣାଗଲା । ହଜାର ହଜାର ଶ୍ରମିକ ଯାଇ ସେଠାରେ ରୁଣ୍ଡ ହେଲେ ।

ସେଠ ବଦ୍ରୀ ଦାସଙ୍କର ମୃତ୍ୟୁ ହୋଇଯାଇଛି । ଶ୍ରମିକମାନଙ୍କ ଅନୁରୋଧରେ ମୃତ ଦେହ ଶ୍ମଶାନକୁ ଯିବା ବାଟରେ କାରଖାନାକୁ ଅଣାଗଲା । ହଜାର ହଜାର ଶ୍ରମିକ ଭକ୍ତିର ସହିତ ଫୁଲ ଚନ୍ଦନ ଦେଲେ । ସେତେବେଳେ ଦେଖାଗଲା ବୃଦ୍ଧଙ୍କ ମୁହଁ ଶାନ୍ତ, ସରସ ଓ ପ୍ରସନ୍ନ । — ସତେ ଅବା ତାଙ୍କର ଜୀବନବ୍ୟାପୀ ସାଧନାରେ ସେ ସିଦ୍ଧିଲାଭ କରିଅଛନ୍ତି, ଯେପରି କି ସେ ନିଶ୍ଚିନ୍ତରେ ଶୋଇ କୌଣସି ସୁଖ-ସ୍ୱପ୍ନରେ ବିଭୋର ହୋଇ ପଡ଼ିଛନ୍ତି ।



[ 'ଶ୍ରମିକ' ଦ୍ୱିତୀୟ ବର୍ଷ, ପ୍ରଥମ ସଂଖ୍ୟା, ମାଘ-ଜାନୁୟାରୀ ୧୯୫୮ ]

